[ This book has been printed in the paper supplied through the Govt. of India at concessional rate. ]

ପ୍ରକାଶକ :

ଅଭିରାମ ମହାପାତ୍ର

ଗ୍ରନ୍ଥ ମନ୍ଦିର

କଟକ-୨ : ବ୍ରହ୍ମପୁର-୧

ମୁଦ୍ରକ :

ଜୟରାମ ମହାପାତ୍ର

ଗ୍ରନ୍ଥ ପ୍ରକାଶିନୀ

କଟକ-୧

ପୁନର୍ମୁଦ୍ରଣ :

ମେ, ୧୯୭୫

ମୂଲ୍ୟ

ଟ ୨-୫୦

1/1 (72), 2/1 (75)

# ସୂଚୀ

## ଅଲୀନଚିତ୍ତ ଜାତକ

ଅତି ପୂର୍ବକାଳରେ ବ୍ରହ୍ମଦତ୍ତ ବାରାଣସୀରେ ରହି ରାଜ୍ୟ ଶାସନ କରୁଥିଲେ । ବାରାଣସୀଠାରୁ କିଛି ଦୂରରେ ଗଙ୍ଗାତୀରରେ ଗୋଟିଏ ଗ୍ରାମ ଥିଲା । ଏଥିରେ ପାଞ୍ଚଶତ ସୂତ୍ରଧର ବାସ କରୁଥିଲେ । ସେମାନେ ଗୃହ ନିର୍ମାଣର ଉପକରଣମାନ ପ୍ରସ୍ତୁତ କରୁଥିଲେ । ଏହି ଉଦ୍ଦେଶ୍ୟରେ ସେମାନେ ନୌକାରେ ବସି କିଛିଦୂରରେ ଥିବା ଗୋଟିଏ ବନକୁ ଯାଉଥିଲେ । ବନରୁ କାଠ ଆଣି ସେଥିରେ ଗୃହର ବିଭିନ୍ନ ଅଂଶ ତିଆରି କରୁଥିଲେ । ପରେ ସେଗୁଡ଼ିକ ନୌକାରେ ଲଦି ବାରାଣସୀକୁ ଆଣୁଥିଲେ । ସେଠାରେ ଲୋକମାନଙ୍କ ବରାଦ ଅନୁସାରେ ଗୃହ ନିର୍ମାଣ କରି ଦେଉଥିଲେ । କାଠ ଶେଷ ହୋଇ-ଗଲେ ପୁଣି ନୌକାରେ ବସି ବନକୁ ଯାଉଥିଲେ ।

ଥରେ ସେମାନେ ବନମଧ୍ୟରେ କାଠ ହାଣି ତାହାକୁ ଆବଶ୍ୟକତା ଅନୁସାରେ କାଟି ସେଥିରେ ଗୃହର ବିଭିନ୍ନ ଅଂଶ ତିଆରି କରୁଥିଲେ । କିଏ ରନ୍ଦାମାରି କାଠ ପାଲିସ କରୁଥିଲା, କିଏ ଶେଣୀ ତିଆରି କରୁଥିଲା, କେହି ଚଉକାଠ ତିଆରି କରୁଥିଲା, କେହି ଅବା କବାଟ ତିଆରି କରୁଥିଲା । ସୂତ୍ରଧରମାନଙ୍କ କାର୍ଯ୍ୟସ୍ଥଳଠାରୁ କିଛିଦୂରରେ ଗୋଟିଏ ହାତୀ ରହୁଥିଲା । ସେ ବନ ମଧ୍ୟରେ ଇତସ୍ତତଃ ଭ୍ରମଣ କରୁଥିଲାବେଳେ ଗୋଟିଏ ଗୋଜିଆ କାଠ ଖଣ୍ଡ ତାର ଗୋଟିଏ ପାଦରେ ପଶିଗଲା । ଏହା ଫଳରେ ତାହାର ପାଦ ପାଚି ଫୁଲିଗଲା । ଯନ୍ତ୍ରଣା ହେତୁରୁ ସେ ଛଟପଟ ହେଲା । କଅଣ

କରିବ, କଟରେ କାଠ ଖଣ୍ଡିକ ପାଦରୁ ବାହାର କରିବ ସେ ସ୍ଥିର କରି ପାରିଲା ନାହିଁ ।

ସୂତ୍ରଧରମାନେ କାଠରେ ବିଭିନ୍ନ ଜିନିଷ ତିଆରି କଲାବେଳେ ଠକ୍ ଠକ୍ ଶବ୍ଦ ହେଉଥିଲା । ହାତୀ ସେହି ଶବ୍ଦ ଶୁଣି ବିଚାର କଲା— ଏଠି ନିକଟରେ ମନୁଷ୍ୟମାନେ କାର୍ଯ୍ୟ କରୁଅଛନ୍ତି । ମୋର ଦୁର୍ଦ୍ଦଶା ଦେଖିଲେ ସେମାନେ ନିଶ୍ଚୟ ଦୟାକରି ମୋ ପାଦରୁ କାଠ ଖଣ୍ଡିକ ବାହାର କରିଦେବେ । ଏହିପରି ବିଚାରି ସେ ତିନି ପାଦରେ ଭରା ଦେଇ ବହୁ କଷ୍ଟରେ ସୂତ୍ରଧରମାନଙ୍କ ପାଖରେ ଉପସ୍ଥିତ ହେଲା । ସେମାନେ ପରୀକ୍ଷା କରି ଦେଖିଲେ, ହାତୀର ଗୋଟିଏ ପାଦରେ କାଠ ଖିଲଟିଏ ଗଳି ଯାଇଥିବାରୁ ପାଦଟି ପାଚି ଫୁଲିଛି । ସେମାନେ ତତ୍‌କ୍ଷଣ ଅସ୍ତ୍ର ସାହାଯ୍ୟରେ ପାଦର ଚର୍ମକୁ କାଟି ଖିଲଟିକୁ କାଢ଼ି-ଦେଲେ ଓ ଚିପି ପୂଜ ବାହାର କରିଦେଲେ । ଗରମ ଜଳରେ ଧୋଇ ବଣରୁ କେତେକ ଔଷଧପତ୍ର ଆଣି ତାର ପାଦରେ ବାନ୍ଧି-ଦେଲେ । ସେମାନେ କିଛି ଡାଳପତ୍ର ଆଣି ହାତୀକୁ ଆହାର ନିମନ୍ତେ ଦେଲେ । ଏହିପରି ଚିକିତ୍ସା ଓ ବିଶ୍ରାମ ଫଳରେ ଦୁଇ ତିନି ଦିନ ପରେ ହାତୀଟି ସଂପୂର୍ଣ୍ଣ ଆରୋଗ୍ୟ ଲଭିଲା ।

ହାତୀ ସୂତ୍ରଧରମାନଙ୍କ ପ୍ରତି କୃତଜ୍ଞତା ପ୍ରକାଶ କରି ଭାବିଲା, "ଏମାନେ ମୋର ଜୀବନ ରକ୍ଷା କରିଅଛନ୍ତି । ସେମାନଙ୍କର କିଛି ଉପକାର କରିବା ମୋର ଏକାନ୍ତ କର୍ତ୍ତବ୍ୟ । ତାହା ନକଲେ ମୁଁ କୃତଘ୍ନତା ଦୋଷରେ ଅପରାଧୀ ହେବି ।" ଏହିପରି ଚିନ୍ତା କରି ସେ ସେମାନଙ୍କୁ ସାହାଯ୍ୟ କରିବାକୁ ଲାଗିଲା । ବଡ଼ ବଡ଼ କାଠ ଗଡ଼ିକୁ ସେ ସେମାନଙ୍କ ନିକଟକୁ ନେଇଆସେ, କାହାର ହତିଆର ତା ହାତକୁ ବଢ଼ାଇ ଦିଏ ଓ ଏହିପରି ସେମାନଙ୍କ ପାଇଁ ଅନ୍ୟାନ୍ୟ କାମ କରେ । ସୂତ୍ରଧରମାନେ ମଧ୍ୟ ନିଜ ନିଜ ଖାଦ୍ୟରୁ କିଛି କିଛି ତାକୁ

ଦଅନ୍ତ । ପ୍ରତ୍ୟେକେ ଅଳ୍ପ ଅଳ୍ପ ଦେଲେ ହେଁ ପାଞ୍ଚଶହ ଜଣଙ୍କର ମିଶି ତାର ପେଟ ପୂରିଯାଏ । ଏହିପରି ହାତୀ ଓ ସୂତ୍ରଧରମାନଙ୍କ ମଧ୍ୟରେ ବନ୍ଧୁତା ପ୍ରତିଷ୍ଠିତ ହେଲା ।

ଏହି ହାତୀଟିର ଗୋଟିଏ ସୁନ୍ଦର ଛୁଆ ଥିଲା । ଛୁଆଟିର ଦେହ ସଂପୂର୍ଣ୍ଣ ଧଳା । କ୍ରମେ ଛୁଆଟି ବଡ଼ି କାର୍ଯ୍ୟ କରିବାକୁ ସମର୍ଥ ହେଲା । ତେଣୁ ହାତୀ ବିଚାର କଲା, "ମୁଁ ବୃଦ୍ଧ ହୋଇ ଆସି-ଲିଣି । ଆଉ କାର୍ଯ୍ୟ କରିବାକୁ ଶକ୍ତି ନାହିଁ । ମୋର ଏହି ପୁଅଟିକୁ ସେମାନଙ୍କ ସେବାରେ ଲଗାଇ ମୁଁ ବଣରେ ଚରି ବୁଲି ଚଳିବି ।"

ଦିନେ ହାତୀ ତାର ପୁଅକୁ ଆଣି ସୂତ୍ରଧରମାନଙ୍କୁ କହିଲା, "ଏଇଟି ହେଉଛି ମୋର ପୁଅ । ମୁଁ ତାକୁ ତୁମମାନଙ୍କ ହାତରେ ଅର୍ପଣ କରୁଛି । ସେ ତୁମମାନଙ୍କୁ ଏଣିକି ସାହାଯ୍ୟ କରିବ ।"

କିପରି ସେ ସୂତ୍ରଧରମାନଙ୍କ ପାଇଁ କାର୍ଯ୍ୟ କରିବ, ତାହା ପୁଅକୁ ବୁଝାଇ ଦେଇ ବୃଦ୍ଧ ହସ୍ତୀଟି ବଣକୁ ଚାଲିଗଲା । ସାନହାତୀ ସୂତ୍ରଧରମାନଙ୍କୁ ବୁଢ଼ା ହାତୀପରି ସାହାଯ୍ୟ କଲା ଓ ସେମାନେ ତାକୁ ନିଜ ନିଜ ଖାଦ୍ୟରୁ କିଛି କିଛି ଦେଇ ପାଖରେ ରଖିଲେ ।

କିଛି କାମ କରିବାକୁ ନଥିଲେ ହାତୀଟି ନଦୀକୂଳରେ ଖେଳି ବୁଲୁଥିଲା । ବେଳେବେଳେ ସେ ସୂତ୍ରଧର ପିଲାମାନଙ୍କ ସଙ୍ଗରେ ଖେଳୁଥିଲା । ସେମାନଙ୍କୁ ଶୁଣ୍ଢରେ ଧରି ଝୁଲାଉଥିଲା, ପିଠିଉପରେ ବସାଉଥିଲା । କେବେ କେବେ ସେମାନଙ୍କୁ ନଦୀରେ ଗାଧୋଇ ଦେଇ ଆଣୁଥିଲା ।

ଏହି ହାତୀଟି କେବେହେଲେ ନଦୀର ଜଳରେ ମଳ ବା ମୂତ୍ର ତ୍ୟାଗ କରୁ ନ ଥିଲା । ନଦୀ ତଟରେ ସେ ଥରେ ମଳ ତ୍ୟାଗ କରିଥିଲା । ସୂର୍ଯ୍ୟକିରଣରେ ତାହା ଶୁଖି ଯାଇଥିଲା । ଉପରେ ବର୍ଷା ହେବାରୁ ନଦୀରେ ବନ୍ୟା ହୋଇ ଖର ବେଗ ଜଳ ପ୍ଲାବିତ ହୋଇଗଲା ଓ

ଜଳ ସ୍ରୋତରେ ସେହି ଶୁଷ୍କ ମଳ ନଦୀରେ ଭାସିଗଲା । ଅନେକ ଦୂର ଭାସି ଯାଇ ତାହା ବାରଣସୀ ଘାଟର ଗୋଟିଏ ବୁଦାରେ ଲାଗି ରହିଲା । ବାରଣସୀ ରଜାଙ୍କର ପାଞ୍ଚ ଶହ ହାତୀ ଥିଲେ । ମାହୁନ୍ତ-ମାନେ ସେମାନଙ୍କୁ ଗାଧୋଇବା ପାଇଁ ଘାଟକୁ ଆଣିଲେ । କିନ୍ତୁ ସେମାନେ ଜଳରେ ପ୍ରବେଶ ନ କରି ପଳାଇବାକୁ ବସିଲେ । ମାହୁନ୍ତମାନେ ଯେତେ ଚେଷ୍ଟାକଲେ ସୁଦ୍ଧା ଗୋଟିକୁ ହେଲେ ଜଳ ଭିତରକୁ ନେଇ ପାରିଲେ ନାହିଁ । ହାତୀମାନଙ୍କ ବିଷୟରେ ଅଭିଜ୍ଞ ପଣ୍ଡିତଙ୍କୁ ପଚାରିବାରୁ ସେ କହିଲେ, "ଜଳରେ କୌଣସି ପଦାର୍ଥ ମିଶିଛି ତାହାର ଗନ୍ଧ ହେତୁରୁ ହାତୀମାନେ ଜଳ ଭିତରକୁ ଯାଉ-ନାହାନ୍ତି ।"

ରଜାଙ୍କ ଆଦେଶରେ ଜାଲ ପକାଇ ନଦୀଜଳ ଖୋଜାଗଲା । ଶେଷରେ ସେହି ଶୁଷ୍କ ମଳ ମିଳିଲା । ମାହୁନ୍ତମାନେ ସେହି ମଳକୁ ଗୁଣ୍ଡକରି ଜଳରେ ମିଶାଇ ଦେଖିଲେ ଯେ ସେଥିରୁ ଏକ ଅପୂର୍ବ ଗନ୍ଧ ବାହାରୁଛି । ସେଥିରୁ କିଛି କିଛି ପ୍ରତ୍ୟେକ ହାତୀ ଉପରେ ସିଞ୍ଚି ଦେବାରୁ ସେମାନଙ୍କ ଦେହରୁ ସୁବାସ ବାହାରିଲା ଓ ସେମାନେ ସ୍ୱେଚ୍ଛାରେ ନଦୀଜଳରେ ପ୍ରବେଶ କରି ସ୍ନାନ କଲେ ।

ଏହି ସମ୍ବାଦ ରଜାଙ୍କର କର୍ଣ୍ଣଗୋଚର ହେବାରୁ ସେ କହିଲେ, "ଯେଉଁ ହାତୀର ମଳରେ ଏପରି ସ୍ୱର୍ଗୀୟ ଗନ୍ଧ ଅଛି, ସେ ନିଶ୍ଚୟ ଶୁଭଲକ୍ଷଣଯୁକ୍ତ । ତାକୁ ଆଣି ଆମେ ରଖିବା ।"

ରଜା ନିଜେ ଅନେକ ଲୋକ ନେଇ ଏହି ହାତୀର ସନ୍ଧାନରେ ବାହାରିଲେ । ରଜା ଓ ତାଙ୍କର ଅନୁଚରମାନେ ନୌକାରେ ବସି ନଦୀସ୍ରୋତର ବିପରୀତ ଦିଗରେ ଯାଇ ଶେଷରେ ସୂତ୍ରଧରମାନଙ୍କୁ ଦେଖିଲେ । ସେମାନଙ୍କ ନିକଟରେ ଏହି ଶ୍ୱେତହସ୍ତୀକୁ ମଧ୍ୟ ଦେଖିଲେ । ଏଇଟି ଯେ ସେହି ସୁଲକ୍ଷଣଯୁକ୍ତ ହସ୍ତୀ ଏଥିରେ ତାଙ୍କର

ସନ୍ଦେହ ରହିଲା ନାହିଁ । ସୂତ୍ରଧରମାନେ ରାଜାଙ୍କ ଯଥାବିଧି ସମ୍ମାନ ଦେଖାଇ କହିଲେ, "ମହାରାଜ ! ନଅରରେ କୌଣସି ଗୃହ ନିର୍ମାଣ କରିବାକୁ ଥିଲେ ଆପଣ ଯେକୌଣସି ଲୋକଦ୍ୱାରା ସମ୍ବାଦ ପଠାଇଥିଲେ ହୋଇଥାନ୍ତା । ଆପଣ ଏତେ ଶ୍ରମ କରି ଏଠାକୁ ଆସିବା ଆବଶ୍ୟକ ନ ଥିଲା । ଆପଣଙ୍କର ଆଦେଶ ପାଳନ କରିବାକୁ ଆମେମାନେ ସର୍ବଦା ପ୍ରସ୍ତୁତ ।"

ରାଜା କହିଲେ, "ମୁଁ ଘର ତିଆରି ବା କୌଣସି କାଠକାମ ସମ୍ପର୍କରେ ଆସିନାହିଁ । ତୁମମାନଙ୍କ ପାଖରେ ଯେଉଁ ହାତୀଟି ଦେଖୁଛି ତାହାକୁ ନେବା ମୋର ଉଦ୍ଦେଶ୍ୟ । ଏତେ ଗୁଣଶାଳୀ ହାତୀକୁ ଅନ୍ୟଦ୍ୱାରା ନେବା ଉଚିତ ମନେ ନ କରି ନିଜେ ଆସିଛି ।"

ସୂତ୍ରଧରମାନେ କହିଲେ, "ଆପଣ ଇଚ୍ଛାକଲେ ସ୍ୱଚ୍ଛନ୍ଦରେ ନେଇ ପାରନ୍ତି । ଆମର କୌଣସି ଆପତ୍ତି ନାହିଁ ।"

ତହୁଁ ରାଜା ହାତୀକୁ କହିଲେ, "ତୁମର ଗୁଣ ଆମ ରାଜ୍ୟରେ ବ୍ୟାପିଯାଇଛି । ମୁଁ କଅଣ କଲେ ତୁମେ ରାଜନଅରକୁ ଯିବ ?"

ହାତୀ କହିଲା, "ଏ ସୂତ୍ରଧରମାନେ ମୋତେ ଏତେ କାଳ ପାଳି ଆସିଛନ୍ତି । ସେମାନେ ମୋପାଇଁ ଯାହା ବ୍ୟୟ କରିଛନ୍ତି, ତାହା ସେମାନଙ୍କୁ ଦିଅନ୍ତୁ ।"

ରାଜା କହିଲେ, "ଏହା ନ୍ୟାୟତଃ ସେମାନଙ୍କର ପ୍ରାପ୍ୟ; ମୁଁ ତାହା ଦେଉଛି ।" ରାଜାଙ୍କ ଆଦେଶରେ ହାତୀଟିର ଲାଞ୍ଜ, ପାଦ ଓ ଶୁଣ୍ଢରେ ଏକଲକ୍ଷ ଲେଖାଏଁ ସ୍ୱର୍ଣ୍ଣମୁଦ୍ରା ବାନ୍ଧି ଦିଆଗଲା । ସେ ଏହି ମୁଦ୍ରାକୁ ସୂତ୍ରଧରମାନଙ୍କୁ ଦେଲା । କିନ୍ତୁ ସେ ସ୍ଥାନ ଛାଡ଼ି ବାହାରିଲା ନାହିଁ ।

ରାଜା ଏଥିର କାରଣ ପଚାରିବାରୁ ହାତୀ କହିଲା, "ଏଇ ସୂତ୍ରଧରମାନଙ୍କର ସ୍ତ୍ରୀମାନେ ମୋତେ କେତେ ସ୍ନେହ କରୁଥିଲେ ।

ସେମାନଙ୍କର ବେଶଭୂଷା ଦେଖି ମୋ ମନରେ ଏତେ ଦୁଃଖ ହେଉଛି ଯେ ମୁଁ ଯାଇ ପାରୁନାହିଁ ।"

ରାଜା ତତ୍‌କ୍ଷଣାତ୍ ଆଦେଶ ଦେଲେ, "ପ୍ରତ୍ୟେକ ସୂତ୍ରଧର ପତ୍ନୀଙ୍କୁ ପଟ୍ଟବସ୍ତ୍ର ଓ ସ୍ୱର୍ଣ୍ଣାଳଙ୍କାର ଦିଅ ।" ଅନୁଚରମାନେ ରାଜା-ଦେଶ ପାଳନ କଲେ ।

ତଥାପି ଶ୍ୱେତହସ୍ତୀ ରାଜାଙ୍କ ନଅରକୁ ଯିବାକୁ ଅନିଚ୍ଛା ପ୍ରକାଶ କରି କହିଲା, "ଏଇ ସୂତ୍ରଧର ବାଳକମାନେ ମୋର କ୍ରୀଡ଼ାସଙ୍ଗୀ ଥିଲେ । ସେମାନେ କିପରି ସୁଖରେ ରହିବେ ତାର ବ୍ୟବସ୍ଥା ନ ହେବାଯାଏ ମୁଁ ଯିବି କିପରି ?"

ରାଜା ଯଥେଷ୍ଟ ଅର୍ଥ ଦେଇ ସେହି ବାଳକମାନଙ୍କର ଲାଳନ-ପାଳନର ବନ୍ଦୋବସ୍ତ କରିଦେଲେ । ତତ୍ପରେ ଶ୍ୱେତହସ୍ତୀଟି ରାଜାଙ୍କ ସହିତ ନଗରକୁ ଗଲା ।

ଏହି ହସ୍ତୀର ଶୁଭାଗମନ ଉପଲକ୍ଷରେ ନଗର ସୁସଜ୍ଜିତ ହେଲା ଓ ଉତ୍ସବର ଆୟୋଜନ କରାଗଲା । ହସ୍ତୀ ନିମନ୍ତେ ଗୋଟିଏ ସ୍ୱତନ୍ତ୍ର ଗୃହ ନିର୍ମାଣ କରାଗଲା । ରାଜା ଏହି ହସ୍ତୀ ସହିତ ନଗର ପରିକ୍ରମା କରି ସମସ୍ତଙ୍କୁ ଜଣାଇଦେଲେ—"ଏ ସାମାନ୍ୟ ହସ୍ତୀ ନୁହେଁ । ମୁଁ ଏହାକୁ ମୋର ଭ୍ରାତାତୁଲ୍ୟ ସ୍ନେହ କରେ ।" ରାଜା ଏହି ହସ୍ତୀଟିକୁ ନିଜେ ବ୍ୟବହାର କରୁଥିଲେ । ଏହାର ଖାଦ୍ୟପେୟ, ଭୂଷଣ ରାଜୋଚିତ ଥିଲା ଓ ରାଜା ଏହାକୁ ଆନ୍ତରିକ ଶ୍ରଦ୍ଧା କରୁ-ଥିଲେ । ଏହି ହସ୍ତୀଟି ଆସିବାପରେ ରାଜାଙ୍କର ଭାଗ୍ୟରେ ପରିବର୍ତ୍ତନ ଦେଖାଗଲା । ତାଙ୍କର ରାଜ୍ୟର ବିସ୍ତୃତି ଘଟିଲା ଓ ଦେଶ ଧନ-ଧାନ୍ୟରେ ପୂର୍ଣ୍ଣ ହେଲା । ଲୋକସାଧାରଣ ବିଶ୍ୱାସ କଲେ ଯେ ହସ୍ତୀର ଆଗମନ ହେଉଛି ରାଜ୍ୟର ମଙ୍ଗଳର କାରଣ ।

ଏତେ କାଳ ପର୍ଯ୍ୟନ୍ତ ବ୍ରହ୍ମଦତ୍ତଙ୍କର କୌଣସି ସନ୍ତାନ ହୋଇ ନ ଥିଲେ । ଏହି ସମୟରେ ତାଙ୍କ ରାଣୀଙ୍କର ଗର୍ଭୋଦୟ ହେଲା । ବୋଧିସତ୍ତ୍ୱ ରାଣୀଙ୍କର ସନ୍ତାନରୂପେ ତାଙ୍କର ଗର୍ଭସ୍ଥ ହୋଇଥିଲେ । ପ୍ରସବକାଳ ନିକଟ ହେଲା । ଏହି ସମୟରେ ରାଜ୍ୟରେ ଅକାଳ ବଜ୍ର ପଡିଲା ପରି ହଠାତ୍ ରାଜାଙ୍କର ମୃତ୍ୟୁ ହେଲା । ମନ୍ତ୍ରୀମାନେ ଭାବିଲେ—"ଶ୍ୱେତହସ୍ତୀ ରାଜାଙ୍କର ଅତି ପ୍ରିୟ ଥିଲା । ସେ ମଧ୍ୟ ରାଜାଙ୍କୁ ପ୍ରାଣଠାରୁ ବଳି ଭଲ ପାଉଥିଲା । ରାଜାଙ୍କର ମୃତ୍ୟୁ ସମ୍ବାଦ ଶୁଣିଲେ ସେ ମଧ୍ୟ ଦୁଃଖରେ ପ୍ରାଣତ୍ୟାଗ କରିବ ।" ତେଣୁ ସେମାନେ ଏହି ଅଶୁଭ ସମ୍ବାଦକି ହସ୍ତୀଠାରୁ ଲୁଚାଇ ରଖିଲେ ଓ ପୂର୍ବରୁ ତାପାଇଁ ଯେଉଁସବୁ ବ୍ୟବସ୍ଥା ଥିଲା, ସେସବୁ ନିୟମିତରୂପେ ଚଳାଇଲେ ।

କୋଶଳ ରାଜ୍ୟ ବାରାଣସୀ ରାଜ୍ୟର ପ୍ରତିବେଶୀ ଓ ଦୁଇ ରାଜ୍ୟ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ଥିଲା । କୋଶଳର ରାଜା ଗୁପ୍ତଚରଠାରୁ ସମ୍ବାଦ ପାଇଲେ ଯେ ବାରାଣସୀର ରାଜା ବ୍ରହ୍ମଦତ୍ତ ଇହଧାମ ତ୍ୟାଗକରି-ଅଛନ୍ତି । ତାଙ୍କର ପୁତ୍ର ନାହିଁ । ମନ୍ତ୍ରୀମାନେ ଅନ୍ୟ କାହାରିକୁ ରାଜଗାଦିରେ ବସାଇନାହାନ୍ତି । ତେଣୁ ବାରାଣସୀ ରାଜ୍ୟକୁ ଆକ୍ରମଣ କରି ଅଧିକାର କରିବାପାଇଁ ଏହା ହେଉଛି ଉପଯୁକ୍ତ ସମୟ ।

ସେ ହଠାତ୍ ସୈନ୍ୟସାମନ୍ତ ନେଇ ବାରାଣସୀ ନଗର ଆକ୍ରମଣ କଲେ । ମନ୍ତ୍ରୀମାନେ ନଗର ଦ୍ୱାର ଅବରୁଦ୍ଧ କରି କୋଶଳ-ରାଜାଙ୍କ ନିକଟକୁ ଦୂତଦ୍ୱାରା ସମ୍ବାଦ ଦେଲେ—"ଆମର ରାଣୀ ଅତି ନିକଟରେ ସନ୍ତାନ ପ୍ରସବ କରିବେ । ଜ୍ୟୋତିଷୀମାନେ କହିଅଛନ୍ତି ଯେ ସାତଦିନ ପରେ ତାଙ୍କର ଏକ ପୁତ୍ର ଜାତ ହେବ । ତାହାହେଲେ, ସେ ରାଜ୍ୟର ଉତ୍ତରାଧିକାରୀ ହେବେ । ତେଣୁ ଆମେମାନେ ତାଙ୍କ ରାଜ୍ୟ ଆପଣଙ୍କ ହାତରେ ସମର୍ପଣ କରି

ପାରିବୁ ନାହିଁ, ଆପଣଙ୍କ ସଙ୍ଗେ ଯୁଦ୍ଧକରି ରାଜ୍ୟ ରକ୍ଷା କରିବୁ ବା ଯୁଦ୍ଧଭୂମିରେ ପ୍ରାଣ ଦେବୁ । କିନ୍ତୁ ଯଦି ପୁତ୍ର ଜାତ ନ ହୋଇ କନ୍ୟା ହୁଏ, ତେବେ ଆମେମାନେ ସ୍ୱତଃ ଆପଣଙ୍କୁ ରାଜ୍ୟ ଛାଡ଼ି-ଦେବୁ । ତେଣୁ ଆପଣ ସାତଦିନ ପର୍ଯ୍ୟନ୍ତ ଅପେକ୍ଷା କରନ୍ତୁ ।"

କୋଶଳରାଜ ଏହି ପ୍ରସ୍ତାବରେ ସ୍ୱୀକୃତ ହେଲେ ।

ସାତଦିନ ପରେ ରାଣୀ ଏକ ପୁତ୍ର ସନ୍ତାନ ଲାଭ କଲେ । ମନ୍ତ୍ରୀମାନେ ଓ ନଗରବାସୀ କୋଶଳରାଜାଙ୍କୁ ଏହି ସମ୍ବାଦ ଜଣାଇ ଯୁଦ୍ଧ କରିବାକୁ ବାହାରି ପଡ଼ିଲେ । ବାରାଣସୀର ସୈନ୍ୟସାମନ୍ତ ଗୁଣରେ ବା ସଂଖ୍ୟାରେ କମ୍ ନଥିଲେ; କିନ୍ତୁ ଉପଯୁକ୍ତ ନେତାର ଅଭାବରୁ ସେମାନେ ପରାସ୍ତ ହେବାକୁ ବସିଲେ । ମନ୍ତ୍ରୀମାନେ ଅଧୀର ହୋଇ ରାଣୀଙ୍କୁ ଜଣାଇଲେ, "ଉପଯୁକ୍ତ ଚାଳକର ଅଭାବରୁ ଆମର ସୈନ୍ୟମାନେ ହାରି ଯାଉଅଛନ୍ତି । ଦେଶକୁ କିପରି ଶତ୍ରୁ ହାତରୁ ରକ୍ଷା କରାଯିବ, ସ୍ଥିର କରି ପାରୁନାହୁଁ । ଶ୍ୱେତହସ୍ତୀ ସ୍ୱର୍ଗତ ରାଜା ବ୍ରହ୍ମଦତ୍ତଙ୍କର ସର୍ବାପେକ୍ଷା ଅଧିକ ପ୍ରିୟ ଥିଲେ । ଏତେବେଳଯାଏ ସେ ଜାଣନ୍ତି ନାହିଁ ଯେ ରାଜାଙ୍କର ମୃତ୍ୟୁ ହୋଇଅଛି ଓ ତାଙ୍କର ଗୋଟିଏ ପୁତ୍ର ଜନ୍ମିଅଛି । ଦେଶକୁ ଯେ ଶତ୍ରୁ ଆକ୍ରମଣ କରିଛି, ତାହା ମଧ୍ୟ ତାଙ୍କୁ ଜଣାଇ ଦିଆଯାଇନାହିଁ । ଆପଣଙ୍କ ଅନୁମତି ହେଲେ ତାଙ୍କୁ ସମସ୍ତ ବିଷୟ ଜଣାଇବୁ ।"

ରାଣୀ ଏହି ପ୍ରସ୍ତାବରେ ସ୍ୱୀକୃତ ହେଲେ ଓ ନିଜେ ସନ୍ତାନ-ଟିକୁ କୋଳରେ ଧରି ମନ୍ତ୍ରୀମାନଙ୍କ ସହିତ ହସ୍ତୀଙ୍କ ନିକଟରେ ଉପସ୍ଥିତ ହୋଇ କହିଲେ, "ତୁମର ଭ୍ରାତୃତୁଲ୍ୟ ରାଜା ବ୍ରହ୍ମଦତ୍ତ ଇହଧାମ ତ୍ୟାଗ କରି ଯାଇଛନ୍ତି । ତାଙ୍କ ମୃତ୍ୟୁ ପରେ ପରେ ତାଙ୍କର ଏହି ସନ୍ତାନଟି ଜନ୍ମିଅଛି । କୋଶଳରାଜା ଏହି ଅବସ୍ଥାରେ ଆମର ନଗର ଆକ୍ରମଣ କରିଛି । ତୁମେ ଥିଲ ମୋ ସ୍ୱାମୀଙ୍କର ଏକାନ୍ତ ପ୍ରିୟ ।

ତୁମର ଯାହା ଇଚ୍ଛା, ତାହା କର ।" ଏହା କହି ରାଣୀ ପିଲାଟିକୁ ତଳେ ରଖିଦେଲେ ।

ହସ୍ତୀ ଚକ୍ଷୁରୁ ଲୋତକ ଢାଳି ରାଜାଙ୍କ ମୃତ୍ୟୁରେ ଦୁଃଖ ପ୍ରକାଶ କଲା ଓ ପିଲାଟିକୁ ଶୁଣ୍ଢରେ ଟେକିଲା ଆଦରରେ ପୁଣି ରାଣୀଙ୍କ କୋଳରେ ରଖିଦେଇ କହିଲା, "ଏହି ଶିଶୁ ହେବ ବାରାଣସୀର ରାଜା । ମୁଁ ବଞ୍ଚି ଥାଉ ଥାଉ କୋଶଳର ରାଜା ଆମ ରାଜ୍ୟ ଅଧିକାର କରି ପାରିବେ ନାହିଁ । ମୁଁ ଯୁଦ୍ଧ କରିବାକୁ ଯିବି ।"

ମନ୍ତ୍ରୀମାନେ ହସ୍ତୀକୁ ଉପଯୋଗୀ ବେଶଭୂଷା ପିନ୍ଧାଇ ଅଶ୍ୱଶସ୍ତ୍ର ସହ ନଗରରୁ ବାହାରକୁ ନେଲେ । ହସ୍ତୀର ଗମ୍ଭୀର ବୃଂହିତ ନାଦରେ ରଣସ୍ଥଳୀ କମ୍ପି ଉଠିଲା । ବାରାଣସୀର ସୈନ୍ୟସାମନ୍ତଙ୍କ ମଧ୍ୟରେ ନବୀନ ଉତ୍ସାହ ଓ ଉଦ୍ଦୀପନା ଖେଳିଗଲା । କୋଶଳରାଜାଙ୍କ ସୈନ୍ୟମାନେ ଛତ୍ରଭଙ୍ଗ ଦେଇ ପଳାଇଲେ । ଶେଷରେ ଶ୍ୱେତହସ୍ତୀ ସ୍ୱୟଂ କୋଶଳରାଜଙ୍କୁ ଶୁଣ୍ଢରେ ଧରି ରାଜପ୍ରାସାଦରେ ଶିଶୁରାଜାଙ୍କ ପାଦତଳେ ରଖିଦେଲେ । କେତେଜଣ ମନ୍ତ୍ରୀ କୋଶଳରାଜଙ୍କୁ ବଧ କରିବାକୁ ଉଦ୍ୟତ ହେଉଥିଲେ । ହସ୍ତୀ ସେମାନଙ୍କୁ ବାରଣ କରି ପରାଜିତ ନରେଶ ରାଜାଙ୍କୁ କହିଲେ, "ତୁମର ଜୀବନ ନେବା ଆମ-ମାନଙ୍କର ଉଦ୍ଦେଶ୍ୟ ନୁହେଁ । କିନ୍ତୁ ଭବିଷ୍ୟତକୁ ସାବଧାନ ରହ । ଆମର ରାଜା ଶିଶୁ, ତେଣୁ ଦୁର୍ବଳ; ଏପରି ଭାବି ଆଉ କେବେ-ହେଲେ ବାରାଣସୀ ରାଜ୍ୟ ଉପରେ ଲୋଲୁପ ଦୃଷ୍ଟି ପକାଇବ ନାହିଁ । କୋଶଳରାଜ ମୁକ୍ତିପାଇ ନିଜ ଦେଶକୁ ଫେରିଗଲେ ।

ବୋଧିସତ୍ତ୍ୱ ସପ୍ତମ ବର୍ଷ ବୟସରେ ବାରାଣସୀର ସିଂହାସନରେ ବସିଲେ । ସେ ନିଜ ପରାକ୍ରମରେ ସମଗ୍ର ଭାରତବର୍ଷକୁ ପଦାନତ କଲେ । ଦୀର୍ଘକାଳ ରାଜ୍ୟ ଶାସନ କରି ଶେଷରେ ସେ ସ୍ୱର୍ଗଗମନ କଲେ ।



## ଚୁଲ୍ଲପଦୁମ ଜାତକ

ଏକ ସମୟରେ ବୋଧିସତ୍ତ୍ୱ ରାଜା ବ୍ରହ୍ମଦତ୍ତଙ୍କର ପାଟରାଣୀଙ୍କ ଗର୍ଭରୁ ତାଙ୍କର ପୁତ୍ରରୂପେ ଜନ୍ମଗ୍ରହଣ କରିଥିଲେ । ସେତେବେଳେ ତାଙ୍କର ନାମ ଥିଲା ପଦ୍ମକୁମାର । ତାଙ୍କ ପରେ ଏକାଦିକ୍ରମେ ତାଙ୍କର ଛଅଟି ଭାଇ ଜନ୍ମଗ୍ରହଣ କରିଥିଲେ । ସାତଭାଇଯାକ ସମୟକ୍ରମେ ଯୌବନରେ ଉପନୀତ ହୋଇ ବିବାହ କଲେ ଓ ପିତାଙ୍କ ସହିତ ରାଜପୁରରେ ବାସ କରିବାକୁ ଲାଗିଲେ ।

ଥରେ ରାଜା ଦେଖିଲେ ଯେ ରାଜପୁତ୍ରମାନେ ଏକସଙ୍ଗରେ ବହୁ ଅନୁଚର ସହିତ ତାଙ୍କ ଦରବାର ଗୃହକୁ ଆସୁଅଛନ୍ତି । ତାଙ୍କ ମନରେ ଗୋଟାଏ ଆଶଙ୍କା ଜାତ ହେଲା । ସେ ଭାବିଲେ, ବୋଧହୁଏ ତାଙ୍କୁ ହତ୍ୟାକରି ରାଜ୍ୟ ଅଧିକାର କରିବା ନିମନ୍ତେ ରାଜପୁତ୍ରମାନେ ମିଳିତ ହୋଇ ଆସୁଅଛନ୍ତି । ସେ ରାଜପୁତ୍ରମାନଙ୍କୁ ଡକାଇ କହିଲେ, "ତୁମେମାନେ ବର୍ତ୍ତମାନ ଯୁବକ । ନାନା ସ୍ଥାନରେ ଭ୍ରମଣ କରି ସଂସାର ସମ୍ବନ୍ଧରେ ଅଭିଜ୍ଞତା ଅର୍ଜନ କରିବା ଉଚିତ । ଏଣିକି ଏ ନଗରରେ ରହିବା ତୁମମାନଙ୍କ ପକ୍ଷରେ ସୁନ୍ଦର ନୁହେଁ । ତୁମେମାନେ ଯେଉଁଠାକୁ ଇଚ୍ଛା ସେଠାକୁ ଯାଇପାର; କିନ୍ତୁ ମୋର ମୃତ୍ୟୁପରେ ଏଠାକୁ ଆସି ତୁମର ପୈତୃକ ରାଜ୍ୟର ଭାର ଗ୍ରହଣ କରିବ ।"

ପିତାଙ୍କ ଆଦେଶକୁ ସେମାନେ ମାନି ରାଜ୍ୟ ଛାଡ଼ି ଯିବାକୁ ପ୍ରସ୍ତୁତ ହେଲେ, କିନ୍ତୁ ସେମାନଙ୍କର ମନରେ ଘୋର ଦୁଃଖ ଜାତ ହେଲା । ଏଥିପୂର୍ବରୁ ରାଜପୁରର ସୁଖସ୍ୱାଚ୍ଛନ୍ଦ୍ୟ ଭିତରେ ସେମାନେ ବଢ଼ିଆସିଥିଲେ; ଏବେ କେଉଁଠାକୁ ଯିବେ, କଅଣ କରିବେ, ଏହି

ଶିନ୍ତା ସେମାନଙ୍କୁ ବ୍ୟାକୁଳ କରି ପକାଉଥିଲା । ସେମାନେ ଭାବିଲେ, "ଯେକୌଣସି ସ୍ଥାନକୁ ଗଲେ ଆମର ଅବସ୍ଥା ସମାନ । ତେଣୁ ଚାଲ, ସେଇଁଠାକୁ ଫେରି ଯିବା ।"

ଏହିପରି ସ୍ଥିରକରି ସେମାନେ ନିଜ ନିଜ ପତ୍ନୀଙ୍କୁ ସଙ୍ଗରେ ନେଇ ରାଜପଥରେ ଚାଲିବାକୁ ଲାଗିଲେ । ଚାଲି ଚାଲି ସେମାନେ ଗୋଟିଏ ଅରଣ୍ୟରେ ଉପସ୍ଥିତ ହେଲେ । ସେତେବେଳକୁ ସେମାନେ କ୍ଷୁଧାରେ କାତର ହୋଇ ପଡ଼ିଥିଲେ । ପାଖରେ କୌଣସି ଖାଦ୍ୟ ନ ଥିଲା । ତେଣୁ ସାତଭାଇଯାକ ବିଚାର କରି ସ୍ଥିର କଲେ—'ଏହି ସ୍ତ୍ରୀମାନଙ୍କୁ ଜଣ ଜଣ କରି ବଧ କରିବେ ଓ ସେମାନଙ୍କର ମାଂସରେ ଅନ୍ୟମାନେ ପ୍ରାଣ ରକ୍ଷା କରିବେ ।' ତତ୍ପରେ ପ୍ରଶ୍ନ ଉଠିଲା, କାହା-ପରେ କାହାକୁ ବଧ କରାଯିବ ? ସମସ୍ତେ ଏକମତ ହୋଇ ସ୍ଥିର କଲେ ଯେ ପ୍ରଥମେ ସବା ସାନଭାଇର ସ୍ତ୍ରୀକୁ ବଧ କରି ଅନ୍ୟମାନେ ତାର ମାଂସ ଖାଇବେ । ତତ୍ପରଦିନ ତା ଉପର ଭାଇର ସ୍ତ୍ରୀର ମାଂସରେ ଅନ୍ୟମାନେ ଜୀବନ ରକ୍ଷା କରିବେ । ଏହିପରି ଶେଷଦିନ ବୋଧିସତ୍ତ୍ୱଙ୍କର ସ୍ତ୍ରୀଙ୍କର ମାଂସରେ କେବଳ ସାତଭାଇ ଉଦର ପୂରଣ କରିବେ ବୋଲି ସ୍ଥିର କରାଗଲା ।

ପ୍ରଥମ ଦିନ ସବା ସାନଭାଇର ସ୍ତ୍ରୀକୁ ବଧ କରି ତାର ମାଂସକୁ ତେର ଭାଗ କରାଗଲା । ସାତ ଭାଇ ଓ ଅବଶିଷ୍ଟ ଛଅ ଯାଆ ଗୋଟିଏ ଲେଖାଏଁ ଭାଗ ଖାଇବାକୁ ପାଇଲେ । ଦ୍ୱିତୀୟ ଦିନ ତା ଉପର ଭାଇର ସ୍ତ୍ରୀକୁ ହତ୍ୟାକରି ତାର ମାଂସକୁ ବାର ଭାଗ କରାଗଲା । ସାତ ଭାଇ ଓ ଅବଶିଷ୍ଟ ପାଞ୍ଚ ଯାଆ ଗୋଟିଏ ଲେଖାଏଁ ଭାଗ ପାଇଲେ । ଏହିପରି ଷଷ୍ଠ ଦିନକୁ ସାତ ଭାଇ ଓ ବୋଧିସତ୍ତ୍ୱଙ୍କ ସ୍ତ୍ରୀ ରହିଲେ । ସେଦିନ ବୋଧିସତ୍ତ୍ୱଙ୍କ ସ୍ତ୍ରୀକୁ ବଧ କରି ସାତ ଭାଇ ଖାଇବାର କଥା ।

କଲୁ ବୋଧିସତ୍ତ୍ୱ ଓ ତାଙ୍କ ସ୍ତ୍ରୀ ଗତ ଛଅ ଦିନ ଯାଏ ପ୍ରତ୍ୟହ ଯେଉଁ ଦୁଇଟି ଭାଗ ପାଉଥିଲେ, ସେଥିରୁ ଗୋଟିଏ ଭାଗ ଦୁହେଁ ଖାଉଥିଲେ ଓ ଅନ୍ୟ ଭାଗଟି ସଞ୍ଚୟ କରି ରଖୁଥିଲେ । ଏହିପରି ଛଅଟି ଭାଗ ସଞ୍ଚିତ ଥିଲା । ସେ ନିଜ ସ୍ତ୍ରୀକୁ ବଧ କରିବାକୁ ନ ଦେଇ ଭାଇମାନଙ୍କୁ କହିଲେ, "ତୁମ ଛଅ ଜଣଙ୍କ ପାଇଁ ମୁଁ ଏ ଖାଦ୍ୟ ଦେଉଛି । କାଲି ଖାଇବା ପାଇଁ ମୁଁ କିଛି ବ୍ୟବସ୍ଥା କରିବି ।" ଭାଇମାନେ ସେହି ସଞ୍ଚିତ ଖାଦ୍ୟକୁ ଖାଇ ଶୋଇପଡ଼ିଲେ । ଏହି ଅବସରରେ ବୋଧିସତ୍ତ୍ୱ ନିଜ ଭାର୍ଯ୍ୟାକୁ ସଙ୍ଗରେ ଘେନି ପଳାଇଗଲେ ।

କିଛି ଦୂର ଯିବାପରେ ସ୍ତ୍ରୀ କହିଲା, "ମୁଁ ଚାଲି ଚାଲି କ୍ଲାନ୍ତ ହୋଇ ପଡ଼ିଛି । ଆଉ ଚାଲିପାରିବି ନାହିଁ ।" ତହୁଁ ବୋଧିସତ୍ତ୍ୱ ତାକୁ ନିଜ କାନ୍ଧରେ ବୋହି ଚାଲିଲେ । ସୂର୍ଯ୍ୟୋଦୟ ହେଲାବେଳକୁ ସେମାନେ ବନଦେଶ ପାର ହୋଇ ଯାଇଥିଲେ । ବୋଧିସତ୍ତ୍ୱ ସ୍ତ୍ରୀକୁ କାନ୍ଧରୁ ଓହ୍ଲାଇ ବିଶ୍ରାମ ନେଲେ ।

ଏହି ସମୟରେ ସ୍ତ୍ରୀ କହିଲା "ମୋତେ ଅସହ୍ୟ ତୃଷା ହେଉଛି । କେଉଁଠାରୁ ଜଳ ଆଣି ଦିଅ ।"

ବୋଧିସତ୍ତ୍ୱ ଅନେକ ସନ୍ଧାନ କରି କୌଣସିଠାରେ ଜଳ ପାଇଲେ ନାହିଁ । ତହୁଁ ସେ କହିଲେ, "ପ୍ରିୟେ, ଏଠାରେ କୌଣସି ଜଳାଶୟ ନାହିଁ । ତେଣୁ ମୋର ରକ୍ତ ପାନ କରି ତୃଷା ଦୂର କର ।" ଏହା କହି ସେ ତରବାରି ଦ୍ୱାରା ନିଜର ଜଙ୍ଘକୁ ଚିରିଦେଲେ ଓ ସ୍ତ୍ରୀ ତାହାର ରକ୍ତ ପାନକରି ସନ୍ତୋଷ ଲାଭ କଲା ।

ତପରେ ଦୁହେଁଯାକ ପୁଣି ଚାଲି ଚାଲି ଗଙ୍ଗା ତୀରରେ ପହଞ୍ଚିଲେ । ଗଙ୍ଗାରେ ସ୍ନାନ ଓ ଜଳପାନ କରି ଏବଂ ବୃକ୍ଷର ଫଳ ଖାଇ ଉଭୟେ ସନ୍ତୁଷ୍ଟ ହେଲେ । ସେମାନେ ଗଙ୍ଗାତୀରରେ ଗୋଟିଏ

ରମଣୀୟ ସ୍ଥାନ ସ୍ଥିର କରି ସେଠାରେ କୁଟୀରଟିଏ ନିର୍ମାଣ କଲେ । ବୃକ୍ଷର ଫଳମୂଳ ଖାଇ ସେମାନେ ସୁଖରେ ଦିନ କଟାଇବାକୁ ଲାଗିଲେ ।

ଏହି ସମୟରେ ସେ ଅଞ୍ଚଳରେ ଜଣେ ଦସ୍ୟୁ ଲୁଣ୍ଠନ ଓ ନରହତ୍ୟା ଆଦି ଅପରାଧ କରିଥିବାରୁ ରାଜା ତାର ହସ୍ତ, ପଦ, ନାସା ଓ କର୍ଣ୍ଣ ଛେଦନ କରି ପଙ୍ଗୁ ଅବସ୍ଥାରେ ଗୋଟିଏ ନୌକାରେ ବସାଇ ଗଙ୍ଗା ନଦୀରେ ନୌକାଟିକୁ ଭସାଇ ଦେଇଥିଲେ । ସେ ଯନ୍ତ୍ରଣାରେ କ୍ରନ୍ଦନ କରୁଥିଲା । ବୋଧିସତ୍ତ୍ୱ ନୌକାଟିକୁ ଟାଣିଆଣି ଲୋକଟିକୁ ଉଦ୍ଧାର କଲେ ଓ ତାକୁ ନିଜ କୁଟୀରରେ ରଖି ବନର ଚେରମୂଳ ଔଷଧ ପ୍ରୟୋଗ କରି ତାର କ୍ଷତଗୁଡ଼ିକ ଆରୋଗ୍ୟ କରିଦେଲେ । ବୋଧିସତ୍ତ୍ୱ ତାର ସେବା ଶୁଶ୍ରୂଷା କରୁଥିଲେ ଓ ଅତିଥି ଭାବରେ ତାକୁ ଉତ୍ତମ ଖାଦ୍ୟପେୟ ଦେଉଥିଲେ । ତାଙ୍କର ହୃଦୟ ଅତ୍ୟନ୍ତ ଉଦାର ଥିଲା ଓ ସେ ଭାବୁଥିଲେ, "ଜୀବନ ଥିବା ପର୍ଯ୍ୟନ୍ତ ପରର ଉପକାର କରିବି ।"

କିନ୍ତୁ ତାଙ୍କ ସ୍ତ୍ରୀକୁ ସ୍ୱାମୀଙ୍କର ଏ କାର୍ଯ୍ୟ ଭଲ ଲାଗୁ ନ ଥିଲା । ଲୋକଟା ଭଲ ହେଲାପରେ ମଧ୍ୟ କାହିଁକି ସେମାନଙ୍କ ଉପରେ ବୃଥା ଭାର ହୋଇ ରହିବ ? ସେ ଏଥିନିମନ୍ତେ ସ୍ୱାମୀଙ୍କ ଉପରେ ବିରକ୍ତ ହେଉଥିଲା ।

ବୋଧିସତ୍ତ୍ୱ ପ୍ରତିଦିନ ବଣରୁ ଫଳମୂଳ ସଂଗ୍ରହ କରିବାକୁ ଯାଉଥିଲେ । କୁଡ଼ିଆରେ ତାଙ୍କ ସ୍ତ୍ରୀ ସହିତ କେବଳ ସେହି ଦୁଷ୍ଟ ଲୋକଟି ରହୁଥିଲା । କ୍ରମେ ସେ ଦୁହିଁଙ୍କ ଭିତରେ ପାପ ପ୍ରଣୟ ଜାତ ହେଲା । ସେମାନେ ମନେକଲେ ଯେ ବୋଧିସତ୍ତ୍ୱ ତାଙ୍କ ପ୍ରେମପଥରେ ଏକ କଣ୍ଟକ ସଦୃଶ । ଏହାକୁ ଦୂର କରିବା ଉଚିତ । ବୋଧିସତ୍ତ୍ୱଙ୍କୁ ବଧ କରିବା ପାଇଁ ତାଙ୍କ ସ୍ତ୍ରୀ ଏକ ଜଘନ୍ୟ କୌଶଳ କଲା ।

ଦିନେ ସେ ସ୍ୱାମୀଙ୍କୁ କହିଲା, "ସେଦିନ ତୁମେ ମହାକଷ୍ଟରେ ମୋତେ କାନ୍ଧରେ ବସାଇ ବନ ମଧ୍ୟରେ ଆଣୁଥିଲ । ଚାରିଆଡ଼େ ହିଂସ୍ର ଜନ୍ତୁଙ୍କର ଗର୍ଜନ ଶୁଭୁଥାଏ; ଗାଢ଼ ଅନ୍ଧକାରରେ ପଥ ଦିଶୁ ନ ଥାଏ । ମୁଁ କେବଳ ଏହି ପର୍ବତର ଶିଖର ଦେଖି ଦେଖି-ପାରୁଥାଏଁ । ସେତେବେଳେ ମୁଁ ମନେ ମନେ ପ୍ରତିଜ୍ଞା କରିଥିଲି ଯେ ଆମେ ନିରାପଦରେ ବନଭାଗ ଅତିକ୍ରମ କରିପାରିଲେ ମୁଁ ଏହି ପର୍ବତଙ୍କୁ ପୂଜା ଦେବି । କିନ୍ତୁ ଆଜିପର୍ଯ୍ୟନ୍ତ ମୁଁ ସେହି ପୂଜା ଦେଇ ପାରି ନ ଥିବାରୁ ମନ ସନ୍ତପ୍ତ ହେଉଅଛି । ତୁମେ ମନ କଲେ ମୋର ସେହି ପ୍ରତିଜ୍ଞା ପୂରଣ କରିପାରିବ ।"

ବୋଧିସତ୍ତ୍ୱ କହିଲେ, "ଏ ଅତି ଉତ୍ତମ କଥା । ଆଜି ମୁଁ ପୂଜାର ଉପକରଣମାନ ନେଇ ଆସିବି ।"

ସେ ଦିନ ବୋଧିସତ୍ତ୍ୱ ପୁଷ୍ପଫଳ ପ୍ରଭୃତି ପୂଜାଦ୍ରବ୍ୟ ସଂଗ୍ରହ କରି ଗୋଟିଏ ପାତ୍ରରେ ରଖି ସ୍ତ୍ରୀକୁ କହିଲେ, "ଚାଲ, ଦୁହେଁ ପର୍ବତ ଶିଖରକୁ ଯାଇ ପର୍ବତ ଦେବତାଙ୍କୁ ପୂଜା କରି ଆସିବା । ଦୁର୍ଗମ ପଥରେ ତୁମ ପକ୍ଷରେ ଏକାକୀ ଯିବା କଷ୍ଟକର ହେବ ।"

ଦୁହେଁ ପର୍ବତ ଚୂଡ଼ାରେ ପହଞ୍ଚିବାରୁ ସ୍ତ୍ରୀ କହିଲା, "ମୁଁ ପର୍ବତ ଦେବତାଙ୍କୁ ପୂଜା କରିବା ପୂର୍ବରୁ ତୁମକୁ ପ୍ରଦକ୍ଷିଣ କରି ପ୍ରଣାମ କରିବା ଉଚିତ, କାରଣ ପତି ହେଉଛନ୍ତି ନାରୀର ପ୍ରଥମ ଦେବତା ।"

ବୋଧିସତ୍ତ୍ୱ ଦୁଷ୍ଟା ପତ୍ନୀର ମନ୍ଦ ଉଦ୍ଦେଶ୍ୟ ଥିବା କଥା ଆଦୌ ସନ୍ଦେହ କରି ନଥିଲେ । ତେଣୁ ସେ ଏ ପ୍ରସ୍ତାବରେ ଆପତ୍ତି ନ କରି ଛିଡ଼ାହୋଇ ରହିଲେ । ଦୁଷ୍ଟା ପ୍ରଦକ୍ଷିଣ କରିବା ବାହାନାରେ ତାଙ୍କ ପଛକୁ ଯିବାମାତ୍ରେ ତାଙ୍କୁ ପର୍ବତ ତଳକୁ ଠେଲି ଗଡ଼ାଇ ଦେଲା । ସେ ଭାବିଥିଲା ଯେ ତତ୍କ୍ଷଣ ପର୍ବତ ଶୃଙ୍ଗରୁ ତଳେ ପଡ଼ି ବୋଧିସତ୍ତ୍ୱ

ପ୍ରାଣ ହରାଇବେ । ସ୍ୱାମୀଙ୍କୁ ପର୍ବତ ଶିଖରରୁ ତଳକୁ ପକାଇଦେଇ ସେ ମନେ ମନେ ଆନନ୍ଦିତ ହୋଇ ଭାବିଲା, "ଏବେ ଆମ ପ୍ରଣୟ ପଥର କଣ୍ଟା ଦୂର ହୋଇଗଲା । ଏଣିକି ଆମେ ଦୁହେଁ ସୁଖରେ ରହିବୁ ।"

ସେ ପର୍ବତରୁ ଓହ୍ଲାଇ କୁଟୀରକୁ ଗଲା ଓ ତାର ପ୍ରଣୟୀକୁ ସମସ୍ତ ଘଟଣା କହିଲା । ଦୁହେଁ ଆନନ୍ଦିତ ହେଲେ ।

ଏଣେ ବୋଧିସତ୍ତ୍ୱ ପର୍ବତ ଚୂଡ଼ାରୁ ଖସି ପଡ଼ୁ ପଡ଼ୁ ଗୋଟିଏ ବୃକ୍ଷର ଗହଳ ପତ୍ର ମଧ୍ୟରେ ଲାଖିଗଲେ । ସେ ସେହି ବୃକ୍ଷକୁ ଆଶ୍ରୟ କରି ରହିଲେ ଓ ତାର ଫଳ ଖାଇ କ୍ଷୁଧା ନିବାରଣ କଲେ । ଗୋଟିଏ ବିରାଟ ଗୋଧି ପ୍ରତିଦିନ ସେହି ବୃକ୍ଷକୁ ଆସି ଫଳ ଭକ୍ଷଣ କରୁଥିଲା । ସେ ଆସି ବୋଧିସତ୍ତ୍ୱଙ୍କୁ ଦେଖି ଭୟରେ ପଳାଇଗଲା । ତପରଦିନ ତାଙ୍କଠାରୁ କିଛି ଦୂରରେ ରହି ସେ ବୃକ୍ଷର ଫଳ ଖାଇଲା । ବୋଧିସତ୍ତ୍ୱ ତାହାର କୌଣସି ଅନିଷ୍ଟ କରୁ ନ ଥିବାର ଦେଖି ସେ ସାହସ କରି ତାଙ୍କର ଅତି ନିକଟକୁ ଆସିଲା ଓ ସେ କିପରି ଏ ବୃକ୍ଷ ଉପରକୁ ଆସିଲେ, ତାହା ପଚାରିଲା । ବୋଧିସତ୍ତ୍ୱ ନିଜ ସ୍ତ୍ରୀର କପଟ ଆଚରଣ ପ୍ରକାଶ କଲେ । ତହୁଁ ଗୋଧି କହିଲା, "ଆପଣ ଚିନ୍ତା କରନ୍ତୁ ନାହିଁ । ମୁଁ ଆପଣଙ୍କୁ ପିଠିରେ ବସାଇ ନିରାପଦରେ ପର୍ବତର ପାଦଦେଶକୁ ନେଇଯିବି ।"

ଗୋଧି ବୋଧିସତ୍ତ୍ୱଙ୍କୁ ପର୍ବତର ପାଦଦେଶରେ ଓହ୍ଲାଇଦେଇ ନିଜ ସ୍ଥାନକୁ ଫେରିଆସିଲା । ବୋଧିସତ୍ତ୍ୱ ଏଣେତେଣେ ବୁଲି ବୁଲି ଗୋଟିଏ ଗ୍ରାମରେ ପହଞ୍ଚିଲେ । ସେଠାରେ ସେ ଶୁଣିବାକୁ ପାଇଲେ ଯେ ତାହାଙ୍କ ପିତାଙ୍କର ମୃତ୍ୟୁ ହୋଇଅଛି । ତେଣୁ ସେ କାଳବିଳମ୍ବ ନ କରି ବାରଣସୀରେ ଉପସ୍ଥିତ ହେଲେ । ମନ୍ତ୍ରୀମାନେ ରାଜପୁତ୍ରଙ୍କୁ ଆନନ୍ଦରେ ପାଛୋଟି ନେଇ ସିଂହାସନରେ ବସାଇଲେ ଓ ଯଥାବିଧି ଅଭିଷେକ ଉତ୍ସବ ସମ୍ପାଦନ କରାଇଲେ ।

ବୋଧିସତ୍ତ୍ୱ ରାଜସିଂହାସନରେ ବସି ଧର୍ମ ଓ ନ୍ୟାୟରେ ରାଜ୍ୟ ଶାସନ କରିବାକୁ ଲାଗିଲେ । ପ୍ରଜାମାନଙ୍କର ସୁଖ ସନ୍ତୋଷ ବିଧାନ କରିବା ତାଙ୍କର ପ୍ରଧାନ ଲକ୍ଷ୍ୟ ଥିଲା । ନଗରରେ ସେ ଛଅଟି ଦାନ-ଶାଳା ପ୍ରତିଷ୍ଠା କରି ପ୍ରତ୍ୟହ ଗରିବ ଦରିଦ୍ରମାନଙ୍କୁ ଛଅ ଲକ୍ଷ ମୁଦ୍ରା ଦାନ କରାଉଥିଲେ । ସବୁ ଦାନଶାଳାର କାର୍ଯ୍ୟ ସେ ନିଜେ ଦେଖୁଥିଲେ ଓ ସମୟେ ସମୟେ ନିଜେ ଦାନ ଦେଉଥିଲେ ।

ଏଣେ ବୋଧିସତ୍ତ୍ୱଙ୍କ ସ୍ତ୍ରୀ ସେହି ପଙ୍ଗୁ ଲୋକ ସହିତ କୁଡ଼ିଆରେ ରହିଥାଏ । ଆଗେ ବୋଧିସତ୍ତ୍ୱ ବଣରୁ ଫଳମୂଳ ଆଣି ଏ ଦୁହିଁଙ୍କୁ ଖାଇବାକୁ ଦେଉଥିଲେ । ଏବେ ଭିକ୍ଷା ନ କଲେ ଚଳିବା ନାହିଁ । ସ୍ତ୍ରୀଟି ପଙ୍ଗୁକୁ କାନ୍ଧରେ ବସାଇ ଗ୍ରାମେ ଗ୍ରାମେ ବୁଲି ଭିକ୍ଷା ମାଗେ । ଲୋକେ ପଚାରନ୍ତି, "ଏ ଲୋକଟି ତୁମର କଅଣ ହୁଏ ?" ଦୁଷ୍ଟା କହେ, "ଏ ମୋର ପିଉସୀ ପୁଅ । ମୋ ବାପମାଆ ତାଙ୍କ ସଙ୍ଗରେ ମୋର ବିବାହ ଦେଇଥିଲେ । ଦୈବଯୋଗକୁ ସେ ଏପରି ପଙ୍ଗୁ ହୋଇଗଲେ । ଅନ୍ଧ ହେଉ, କାଲ ହେଉ, କୁଜା ହେଉ, ଖଞ୍ଜ ହେଉ ଯାହା ହେଲେ ମଧ୍ୟ ସ୍ୱାମୀ ମୋର ପରମ ଦେବତା । ତାଙ୍କୁ ଘେନି ଜୀବନ ଥିବାଯାକେ ବୁଲିବି ।" ଲୋକେ ଏହା ଶୁଣି ମନେ କରନ୍ତି, "ଏଇଟି ଗୋଟିଏ ମହାସତୀ । ଏହାର ସ୍ୱାମୀ ଭକ୍ତିର ତୁଳନା ନାହିଁ ।" ତେଣୁ ସେମାନେ ତାକୁ ବେଶି ପରିମାଣରେ ଭିକ୍ଷା ଦିଅନ୍ତି । ଭିକ୍ଷାରୁ ଯାହା ମିଳେ ସେଥିରେ ଦୁହେଁ ଚଳିଯାନ୍ତି ।

ଦିନେ ସେ ସ୍ୱାମୀଙ୍କୁ କାନ୍ଧରେ ବସାଇ ଗୋଟିଏ ଗ୍ରାମରେ ଭିକ୍ଷା ମାଗୁଥିଲା । ଗ୍ରାମର କେତେ ଜଣ ତାକୁ କହିଲେ, "ଆମ ରାଜ୍ୟର ଯେଉଁ ନୂଆ ରାଜା ହୋଇଛନ୍ତି, ସେ ବଡ଼ ଦୟାଳୁ । ସେ ଛଅଟା ଦାନଶାଳା ବସାଇ ପ୍ରତିଦିନ ଛଅଲକ୍ଷ ମୁଦ୍ରା ଦାନ ଦେଉ-ଅଛନ୍ତି । ତାଙ୍କ ଦାନଶାଳାରୁ କେହି ଖାଲି ହାତରେ ଫେରିବାର

ଶୁଣାନାହିଁ । ରାଜ୍ୟର ପଙ୍ଗୁ ଅଥବା ଲୋକଙ୍କ ପାଇଁ ସେ ଖଞ୍ଜା କରି ଦେଇଅଛନ୍ତି । ତୁମେ ଏତେ କଷ୍ଟ କରି ଭିକ୍ଷା କରୁଛ କାହିଁକି ? ସେଠାକୁ ଗଲେ ତୁମର ଭାଗ୍ୟ ବଦଳିଯିବ । ତୁମର ସତୀତ୍ୱ ଓ ପତିଭକ୍ତି ଦେଖିଲେ ସେ ତୁମ ଦୁହିଁଙ୍କର ସୁଖରେ ଚଳିବା ପାଇଁ ପ୍ରଚୁର ଧନ ଖଞ୍ଜା କରିଦେବେ ।"

ଦୁଷ୍ଟା ତାର ଉପପତିକୁ ଗୋଟିଏ ଟୋକେଇରେ ବସାଇ ମୁଣ୍ଡରେ ବୋହି ବାରଣସୀରେ ପହଞ୍ଚିଲା । ରାଜାଙ୍କ ବିଷୟରେ ସେ ଯାହା ଶୁଣିଥିଲା ତାହା ସତ୍ୟ ଦେଖିଲା । ସେ ପ୍ରତିଦିନ ଦାନ-ଶାଳାରୁ ଯାହା ପାଉଥିଲା ସେଥିରେ ଦୁହେଁଯାକ ସ୍ୱଚ୍ଛନ୍ଦରେ ଚଳି ଯାଉଥିଲେ ।

ବୋଧିସତ୍ତ୍ୱ ଏକ ସୁସଜ୍ଜିତ ହସ୍ତୀପୃଷ୍ଠରେ ବସି ଦାନଶାଳାର କାର୍ଯ୍ୟ ପର୍ଯ୍ୟବେକ୍ଷଣ କରିବାକୁ ଯାଉଥିଲେ । ଦାନଶାଳାର ଦ୍ୱାର-ଦେଶରେ ସେ ତାଙ୍କର ଦୁଷ୍ଟା ପତ୍ନୀକୁ ଦେଖି ଚିହ୍ନିପାରିଲେ । ଟୋକେଇରେ ବସିଥିବା ଲୋକଟି ଯେ ତାର ଉପପତି ତାହା ମଧ୍ୟ ଜାଣି ପାରିଲେ; କିନ୍ତୁ ଏଥିମଧ୍ୟରେ ବୋଧିସତ୍ତ୍ୱଙ୍କର ଏତେ ପରିବର୍ତ୍ତନ ହୋଇଯାଇଥିଲା ଯେ, ସେ ଦୁଷ୍ଟା ତାଙ୍କୁ ନିଜର ସ୍ୱାମୀ ବୋଲି ଜାଣି-ପାରିଲା ନାହିଁ । ଦାନଶାଳାରେ ପ୍ରବେଶ କରି ବୋଧିସତ୍ତ୍ୱ ନିଜର ଆସନ ଗ୍ରହଣ କରି ସେହି ସ୍ତ୍ରୀକୁ ଡକାଇଲେ । ସେ ମୁଣ୍ଡରେ ପଙ୍ଗୁ ଲୋକଟିକୁ ନେଇ ତାଙ୍କ ଆଗରେ ରଖିଦେଲା । ଉପସ୍ଥିତ ଲୋକେ ରାଜାଙ୍କୁ କହିଲେ, "ଏ ଗୋଟିଏ ମହାସତୀ । ଏହାକୁ ବିଶେଷ ସାହାଯ୍ୟ ମିଳୁ ।" ରାଜା ସ୍ତ୍ରୀକୁ ପଚାରିଲେ, ଏ ଯେଉଁ ଲୋକଟିକୁ ତୁମେ ମୁଣ୍ଡରେ ବୋହି ଭିକ୍ଷା ମାଗୁଛ, ସେ ତୁମର କଅଣ ହୁଏ ?" ସ୍ତ୍ରୀ ଲୋକଟି ଉତ୍ତର କଲା, "ସେ ମୋର ପିଉସୀ ପୁଅ ଭାଇ । ମୋର ପିତାମାତା ତା ସହିତ ମୋର ବିବାହ ଦେଇଥିଲେ । ଦୈବ

ଦୁର୍ବିପାକରୁ ସେ ପଙ୍ଗୁ ହୋଇଗଲେ । କିନ୍ତୁ ପତି ମୋର ଏକମାତ୍ର ଦେବତା, ତେଣୁ ତାଙ୍କୁ ମୁଣ୍ଡରେ ବୋହି ବୁଲୁଛି ।"

ଲୋକେ ସ୍ତ୍ରୀଟିର ସଚ୍ଚରିତ୍ର ଓ ପତିଭକ୍ତିର ଉଚ୍ଚ ପ୍ରଶଂସା କଲେ । ତହୁଁ ବୋଧିସତ୍ତ୍ୱ କହିଲେ, "ଓଃ ! ଏଇ ଲୋକଟି ତୋର ସ୍ୱାମୀ ? ତୋର ପିଉସୀ ପୁଅ ? ଏହାରି ସଙ୍ଗେ ତୋର ବିବାହ ହୋଇଥିଲା ? ସତ କରି କହ, ଏ କିଏ ?

ସେ ବୋଧିସତ୍ତ୍ୱଙ୍କୁ ଆଦୌ ଚିହ୍ନିପାରି ନଥିଲା । ତେଣୁ ସେ ସାହସ କରି ପୂର୍ବପରି କହିଲା ।

ବୋଧିସତ୍ତ୍ୱ କହିଲେ, "ତାହାହେଲେ ଏଇ ଲୋକଟି ହେଉଛି, ବାରାଣସୀର ସ୍ୱର୍ଗତ ରାଜା ବ୍ରହ୍ମଦତ୍ତଙ୍କ ପୁଅ ପଦ୍ମକୁମାର; ଆଉ ତୁ ହେଉଛୁ ଜଣେ ରାଜାଙ୍କ କନ୍ୟା । ତୁ ପଦ୍ମକୁମାରଙ୍କୁ ପରା ବିବାହ ହୋଇଥିଲୁ ? ତୋର ମନେଅଛି କି ଦିନେ ବନ ମଧ୍ୟରେ ତୋର ତୃଷା ନିବାରଣ ପାଇଁ ମୋ ଦେହର ଏହି ସ୍ଥାନରୁ ତୁ ରକ୍ତପାନ କରିଥିଲୁ ? ତୁ ମୋତେ ପର୍ବତଶିଖରରୁ ତଳକୁ ପିଙ୍ଗିଦେଇଥିବା କଥା ମନେପଡ଼ୁଛି ? ଏବେ ମୋତେ ଦେଖ, ଭଲକରି ଚିହ୍ନ । ତୋ ଭଳି ରାକ୍ଷସୀ ପୃଥିବୀରେ ରହିବା ପାପ, ତୋତେ ମୃତ୍ୟୁଦଣ୍ଡ ମଧ୍ୟ ଯଥେଷ୍ଟ ନୁହେଁ ।"

ତପୂରେ ନିଜର ମନ୍ତ୍ରୀ ଓ କର୍ମଚାରୀମାନଙ୍କୁ ବୋଧିସତ୍ତ୍ୱ କହିଲେ, "ମୁଁ ରାଜ୍ୟକୁ ଆସିଲା ଦିନ ତୁମମାନଙ୍କୁ ସମସ୍ତ ଘଟଣା କହିଥିଲି । ମୋର ଛଅଭାଇ ନିଜ ନିଜର ସ୍ତ୍ରୀକୁ ବଧ କରାଇ ପ୍ରାଣ ରକ୍ଷା କରିଥିଲେ; କିନ୍ତୁ ମୁଁ ଏହାର ଜୀବନ ରକ୍ଷା କରି ଗଙ୍ଗା-କୂଳରେ ଏକ କୁଡ଼ିଆରେ ରହିଥିଲି । ଏହି ପଙ୍ଗୁକୁ ନଦୀରୁ ଉଦ୍ଧାର କରି ତାକୁ ଆରୋଗ୍ୟ କରିଥିଲି । ଏବେ ସେ ହୋଇଛି ତାର

ଉପପତି । ଯେଉଁ ସ୍ତ୍ରୀ ମୋତେ ମାରିବାପାଇଁ ପର୍ବତରୁ ଠେଲି ଦେଇ-ଥିଲା, ଏ ସେହି ସ୍ତ୍ରୀ ।''

ସ୍ତ୍ରୀଟିର ବାକ୍ୟ ସ୍ଫୁରିଲା ନାହିଁ । ମନ୍ତ୍ରୀମାନେ ଘୋର ନିନ୍ଦାକରି କହିଲେ, ''ଏ ଦୁଇ ଜଣଙ୍କର ପ୍ରାଣଦଣ୍ଡ ଯଥାର୍ଥ ହେବ ।''

ପରମ କାରୁଣିକ ବୋଧିସତ୍ତ୍ୱ କ୍ରୋଧକୁ ଦମନ କରି କହିଲେ, ''ଏ ଦୁହିଁଙ୍କର ପ୍ରାଣଦଣ୍ଡ ଉପଯୁକ୍ତ ହେଲେହେଁ ସେମାନଙ୍କ ଜୀବନ ନେବାରେ ଲାଭ ନାହିଁ । ସେ ଦୁହିଁଙ୍କୁ ରାଜ୍ୟରୁ ନିର୍ବାସନ କରାଯାଉ ।''

ତାହାହିଁ କରାଗଲା । ଲୋକେ ବୋଧିସତ୍ତ୍ୱଙ୍କ ଦୟାର ପ୍ରଶଂସା କଲେ । ***

## ଖରପୁତ୍ର ଜାତକ

ଏକ ସମୟରେ ବୋଧିସତ୍ତ୍ୱ ନିଜର ପୁଣ୍ୟ ବଳରେ ସ୍ୱର୍ଗରେ ଶକ୍ର ହୋଇଥିଲେ । ସେତେବେଳେ ବାରାଣସୀର ରାଜା ଥିଲେ ସେନକ ।

ନାଗମାନେ ପାତାଳରେ ବାସ କରନ୍ତି । କିନ୍ତୁ ଖାଦ୍ୟ ଆହରଣ ପାଇଁ ସେମାନଙ୍କୁ ସମୟେ ସମୟେ ପୃଥିବୀ ଉପରକୁ ଆସିବାକୁ ହୋଇଥାଏ । ନାଗରାଜ୍ୟର ରାଜା ମଧ୍ୟ ସେହିପରି ପୃଥିବୀକୁ ଆସନ୍ତି । ଏହି ନାଗରାଜାଙ୍କ ସହିତ ରାଜା ସେନକଙ୍କର କ୍ରମେ ବନ୍ଧୁତା ଜାତ ହେଲା ।

ଦିନେ ନାଗରାଜା ପୃଥିବୀରେ ଭ୍ରମଣ କରୁଥିବା ସମୟରେ କେତେକ ପିଲା ତାଙ୍କୁ ଦେଖିପାରି ତାଙ୍କ ଉପରକୁ ଟେକା ପଥର

ଫିଙ୍ଗିଲେ । ସେତେବେଳକୁ ରାଜା ସେନକ ତାଙ୍କ ପ୍ରମୋଦ ଉଦ୍ୟା-
ନକୁ ଯାଉଥିଲେ । ସେ ଏହି ଘଟନା ଦେଖି ପିଲମାନଙ୍କୁ ଏହି
କାର୍ଯ୍ୟରୁ ବିରତ କରାଇଲେ । ପିଲମାନେ ପଳାଇଯିବାରୁ ନାଗ-
ରାଜାଙ୍କର ଜୀବନ ରକ୍ଷା ପାଇଲା । । ସେ ନିଜ ନାଗରାଜ୍ୟକୁ ଫେରି-
ଗଲେ ଓ କୃତଜ୍ଞତାର ଚିହ୍ନସ୍ୱରୂପ କେତେକ ଅମୂଲ୍ୟ ରତ୍ନସହିତ
ରାଜାଙ୍କ ଶୟନ ଗୃହରେ ଉପସ୍ଥିତ ହେଲେ ଏବଂ ତାଙ୍କୁ ରତ୍ନଗୁଡ଼ିକ
ଦେଇ କହିଲେ, "ଆପଣ ମୋ ଜୀବନ ରକ୍ଷା କରିଥିବାରୁ ମୁଁ
ଆପଣଙ୍କ ପ୍ରତି କୃତଜ୍ଞ ।" ରାଜା ସେନକ ମଧ୍ୟ ତାଙ୍କୁ ଉପଯୁକ୍ତ
ସମ୍ବର୍ଦ୍ଧନା କଲେ । ଦୁହିଁଙ୍କ ଭିତରେ ବନ୍ଧୁତା ଦୃଢ଼ୀଭୂତ ହେଲା ।

ଏଣିକି ନାଗରାଜା ବାରମ୍ବାର ଆସି ସେନକଙ୍କ ସଙ୍ଗେ
ସାକ୍ଷାତ କଲେ । ଦିନେ ସେ ଗୋଟିଏ ନାଗକନ୍ୟା ଅଣି ରାଜାଙ୍କୁ
ଉପହାର ଦେଇ କହିଲେ, "ଏ କନ୍ୟାଟି ଆପଣଙ୍କ ସେବା କରିବ ।
ଆପଣଙ୍କୁ ଆନନ୍ଦ ଦେବା ହେବ ତାର କାର୍ଯ୍ୟ । ମୁଁ ଆପଣଙ୍କୁ
ଗୋଟିଏ ମନ୍ତ୍ର ଦେଉଛି । କେବେ ତାକୁ ନ ଦେଖିଲେ, ଏହି ମନ୍ତ୍ର
ପାଠ କରିବେ । ତାହାହେଲେ ସେ କେଉଁଠି ଅଛି, ଆପଣ ଜାଣି-
ପାରିବେ ।" ନାଗରାଜା ଏହା କହି ରାଜାଙ୍କୁ ମନ୍ତ୍ରଟି ମଧ୍ୟ ଦେଲେ ।

ଦିନେ ରାଜା ନାଗକନ୍ୟାକୁ ସଙ୍ଗରେ ନେଇ ଉପବନରେ
ବିହାର କରୁଥିଲେ । ଉପବନରେ ଗୋଟିଏ ସୁନ୍ଦର ପୁଷ୍କରିଣୀ ଥିଲା
ଓ ତାହା ପଦ୍ମପୁଷ୍ପରେ ପରିପୂର୍ଣ୍ଣ ଥିଲା । ପୁଷ୍କରିଣୀ ଜଳରେ ଗୋଟିଏ
ସର୍ପ ସନ୍ତରଣ କରୁଥିବାର ଦେଖି ନାଗକନ୍ୟା ତାହା ସହିତ ବିହାର
କରିବାକୁ ଇଚ୍ଛାକଲା । ସେ ସର୍ପରୂପ ଧରି ପୁଷ୍କରିଣୀର ସର୍ପ ସହିତ
ଜଳକେଳି କରିବାକୁ ଲାଗିଲା । କିଛି ସମୟ ପରେ ରାଜା
ଦେଖିଲେ, ନାଗକନ୍ୟା ତାଙ୍କ ପାଖରେ ନାହିଁ । ଉଦ୍ୟାନରେ ତାର
ସନ୍ଧାନ ମିଳିଲା ନାହିଁ । ତହୁଁ ସେ ନାଗରାଜାଙ୍କ ମନ୍ତ୍ର ପାଠ କରି

ଜାଣିଲେ ଯେ ନାଗକନ୍ୟା ପୁଷ୍କରଣୀର ଏକ ସର୍ପ ସହିତ ଜଳକେଳି କରୁଅଛି । ସେ ତାହା ଉପରେ ବିରକ୍ତ ହୋଇ ତାକୁ ପ୍ରହାର କଲେ । ଏଥିରେ ସେ ଅପମାନିତ ହୋଇ ନାଗରାଜ୍ୟକୁ ପଳାଇ-ଯାଇ ନାଗରାଜାଙ୍କୁ କହିଲା, "ଆପଣ ମୋତେ ରାଜା ସେନକଙ୍କର ସେବା କରିବାକୁ କହିଥିଲେ । ମୁଁ ତାଙ୍କର ଅନ୍ୟାୟ ଆଦେଶ ପାଳନ ନ କରିବାରୁ ସେ ମୋତେ ପ୍ରହାର କରି ତଡ଼ିଦେଲେ ।" ଏହା କହି କାନ୍ଦି କାନ୍ଦି ନିଜଦେହର ଆଘାତଚିହ୍ନ ଦେଖାଇଲା । ନାଗରାଜା ତାହା କଥାରେ ବିଶ୍ୱାସ କରି କ୍ରୋଧାନ୍ଧ ହୋଇଗଲେ ଓ ସଙ୍ଗେ ସଙ୍ଗେ କେତେଜଣ ନାଗକୁ ଆଦେଶ ଦେଲେ—ତୁମେ-ମାନେ ରାଜା ସେନକଙ୍କ ଶୟନଗୃହରେ ପ୍ରବେଶ କରିବ ଓ ତୁମର ନିଶ୍ୱାସରେ ତାଙ୍କୁ ଭସ୍ମ କରିଦେଇ ଆସିବ ।

ସେମାନେ ରାଜାଙ୍କ ଶୟନ କକ୍ଷର ଦ୍ୱାରଦେଶରେ ଉପସ୍ଥିତ ହେଲାବେଳକୁ ରାଜା ଓ ରାଣୀଙ୍କ ମଧ୍ୟରେ ଆଳାପ ଚାଲିଥିଲା । ରାଜା ପଚାରିଲେ, "ରାଣୀ ସେ ନାଗକନ୍ୟା କେଉଁଠାକୁ ଯାଇଛି ଜାଣ କି ?" ରାଣୀ କହିଲେ, "ନା, ମୁଁ ଜାଣେନାହିଁ । ମୋତେ କହି ସେ ଯାଇନାହିଁ ।" ରାଜା କହିଲେ, "ଆଜ ଆମେ ସକାଳେ ପୁଷ୍କରଣୀ ନିକଟରେ ଥିବା ସମୟରେ ସେ ଜଳରେ ଗୋଟିଏ ସର୍ପକୁ ଦେଖି ନିଜର ରୂପ ବଦଳାଇ ଦେଇ ତା ସଙ୍ଗରେ ଜଳକେଳି କରି-ବାକୁ ଲାଗିଗଲା । ସେଥିପାଇଁ ମୁଁ ତାକୁ ସାବଧାନ କରି ମାଡ଼ ଦେଇଥିଲି । ମୋର ସନ୍ଦେହ ହେଉଛି, ସେ ନାଗପୁରକୁ ଯାଇ ନାଗରାଜାଙ୍କ ଆଗରେ ମିଥ୍ୟାରେ କିଛି କହିଥିବ । ଏହା ଫଳରେ ଆମ ଦୁହିଁଙ୍କ ଭିତରେ ବିରୋଧ ସୃଷ୍ଟି କରିବା ତାର ଉଦ୍ଦେଶ୍ୟ ହୋଇପାରେ ।"

ଯେଉଁ ନାଗମାନେ ରାଜାଙ୍କୁ ବିନାଶ କରିବାକୁ ଯାଇଥିଲେ, ସେମାନେ ଦେଖିଲେ, ଏଥିରେ ରାଜାଙ୍କର ଆଦୌ ଦୋଷ ନାହିଁ । ଦୋଷ ହେଉଛି ନାଗ କନ୍ୟାର । ନାଗପୁରର କନ୍ୟା ହୋଇ ପୃଥିବୀର ଗୋଟାଏ ଇତର ସର୍ପ ସହିତ ବିହାର କରିବା ସମଗ୍ର ନାଗରାଜ୍ୟ ପକ୍ଷରେ ନିନ୍ଦାର ବିଷୟ । ତେଣୁ ସେମାନେ ରାଜାଙ୍କୁ ବିନାଶ ନକରି ଫେରିଗଲେ ଓ ନାଗରାଜାଙ୍କୁ ସମସ୍ତ ବିଷୟ ଜଣାଇଲେ । ନାଗରାଜାଙ୍କର ସେନକଙ୍କ ପ୍ରତି ସ୍ନେହ ଓ ମମତା ଅଧିକ ବୃଦ୍ଧି ପାଇଲା । ସେ ତତ୍‌କ୍ଷଣାତ୍ ସେନକଙ୍କ ଶୟନାଗାରକୁ ଆସି ସମସ୍ତ ଘଟନା କହି କ୍ଷମାପ୍ରାର୍ଥନା କଲେ ଓ ହଠାତ୍ ତାଙ୍କୁ ଧ୍ୱଂସ କରିବାକୁ କହିଥିବାରୁ ଅନୁତାପ କଲେ । ତତ୍ପରେ ସେ କହିଲେ, "ବନ୍ଧୁ, ମୁଁ ତୁମକୁ ଆଜ ଗୋଟିଏ ମନ୍ତ୍ର ଦେଉଛି । କିନ୍ତୁ ସାବଧାନ ତୁମେ ଏ ମନ୍ତ୍ର ଅନ୍ୟ କାହାରିକୁ କହିବ ନାହିଁ । କହିଲେ ତୁମେ ଅଗ୍ନିରେ ପ୍ରବେଶ କରି ଧ୍ୱଂସ ହୋଇଯିବ । ଏହି ମନ୍ତ୍ର ବଳରେ ତୁମେ ପୃଥିବୀର ଶ୍ରେଷ୍ଠ ବନ୍ଧ ଯେକୌଣସି ଜୀବର ଭାଷା ବୁଝି ପାରିବ ।" ଏହା କହି ସେ ରାଜାଙ୍କୁ ସେହି ଅମୂଲ୍ୟ ମନ୍ତ୍ରଟି ଶିଖାଇ ଦେଲେ । ସେହି ଦିନଠାରୁ ରାଜା ସବୁ ଜୀବଙ୍କର ଭାଷା ବୁଝିପାରିଲେ ।

ଦିନେ ସେ ଖାଇବସିଥିଲେ । ଅନ୍ୟାନ୍ୟ ଜିନିଷ ସହିତ ମହୁ ଓ ଗୁଡ଼ ରାଜାଙ୍କୁ ଦିଆଯାଇଥିଲା । ତାଙ୍କ ହାତରୁ ଟିକିଏ ମହୁ, ଟିକିଏ ଗୁଡ଼ ଓ ଟିକିଏ ରୁଟି ତଳେ ପଡ଼ିଗଲା । ଗୋଟିଏ ପିମ୍ପୁଡ଼ି ତାର ସାଥିମାନଙ୍କୁ ଡାକି କହିଲା, "ରାଜାଙ୍କର ମହୁ ମାଠିଆ, ଗୁଡ଼ମାଠିଆ ଛିଡ଼ି ପଡ଼ୁଛି । କେତେଗାଡ଼ି ରୁଟି ବି ପଡ଼ୁଛି । ଆସ, ଯିଏ ଯେତେ ପାରିବ ଖାଅ ।" ରାଜା ପିମ୍ପୁଡ଼ିର କଥା ଶୁଣି ହସିଉଠିଲେ । ରାଣୀ ରାଜାଙ୍କ ପାଖରେ ବସିଥିଲେ । ରାଜାଙ୍କ ହସିବା ଦେଖି ସେ ଆଶ୍ଚର୍ଯ୍ୟ ହୋଇଗଲେ । ରାଜା ଖାଇସାରି ଆସନରେ

ବସି ବିଶ୍ରାମ ନେଲେ । ଏହି ସମୟରେ ଗୋଟିଏ ମାଛି ତାର ସ୍ତ୍ରୀକୁ କହିଲା, "ଆସ, ଦୁହେଁ ଏକାଠି ବସି ଟିକଏ ମଧୁର ଆଳାପ କରିବା ।" ମାଛିର ସ୍ତ୍ରୀ କହିଲା, "ଟିକଏ ଅପେକ୍ଷା କର । ଦାସୀମାନେ ରାଜାଙ୍କ ପାଇଁ ନାନା ସୁଗନ୍ଧ ଦ୍ରବ୍ୟ ନେଇ ଆସୁଛନ୍ତି । ତାଙ୍କ ଦେହରୁ ଯାହା ଖସିପଡ଼ିବ ସେଥିରେ ଆମ ଦୁହିଁଙ୍କ ଦେହ ମଧ୍ୟ ସୁଗନ୍ଧ ହୋଇଯିବ । ତାହାପରେ ରାଜାଙ୍କ ପିଠି ଉପରେ ବସି ମଜା ଗପ କରିବା ।"

ମାଛି ଦୁଇଟିଙ୍କର ଏହି କଥାର ଶୁଣି ରାଜା ପୁଣି ହସିଉଠିଲେ । ଏଥର ମଧ୍ୟ ରାଣୀ ରାଜାଙ୍କ ହସର କୌଣସି କାରଣ ଅନୁମାନ କରି ନପାରି ଏକାନ୍ତ ବିସ୍ମିତ ହେଲେ । ରାତିରେ ଖାଇବାବେଳେ ରାଜାଙ୍କ ହାତରୁ କେତୋଟା ଭାତ ତଳେ ପଡ଼ିଗଲା । ପାଖରେ କେତୋଟି ପିମ୍ପୁଡ଼ି ଥିଲେ । ସେମାନେ ପରସ୍ପର ମଧ୍ୟରେ କଥାବାର୍ତ୍ତା କହିଲେ, "ରାଜାଙ୍କ ଭାତ ଶଗଡ଼ ତଳେ ପଡ଼ିଯାଇଛି । ଖାଇବାକୁ କିଏ ଅଛି ? ଏଥିରେ ଆମର ପଚିଶ ତିରିଶ ବର୍ଷ ଚଳିଯିବ ।" ପିମ୍ପୁଡ଼ିମାନଙ୍କ କଥା ଶୁଣି ରାଜା ଆଉଥରେ ହସିଲେ । ଏଥର ମଧ୍ୟ ରାଣୀ ହସର କୌଣସି କାରଣ ସ୍ଥିର କରିନପାରି ଭାବିଲେ, ବୋଧହୁଏ ରାଜା ମୋତେ ଦେଖି ହସୁଛନ୍ତି । ତାଙ୍କୁ ପଚାରି କାରଣ ଜାଣିବାକୁ ସେ ସ୍ଥିର କଲେ ।

ଶୋଇବାବେଳେ ରାଣୀ ରାଜାଙ୍କୁ ପଚାରିଲେ, "ଆଜି କୌଣସି କାରଣ ନ ଥାଇ ତୁମେ ତିନି ଥର ହସିଛ । ସେତେବେଳେ ପାଖରେ ମୋ ଛଡ଼ା ଆଉ କେହି ନଥିଲେ । ତୁମ ହସର କାରଣ ମୋତେ କହିବାକୁ ହେବ ।" ରାଜା କହିଲେ, "ମୁଁ କାହିଁକି ହସିଲି, ସେଥିରୁ ତୁମେ କଅଣ ପାଇବ ? ମୋ ମନ ହେଲା, ମୁଁ ହସିଲି ।" କିନ୍ତୁ ରାଣୀ ଏତିକରେ ଚୁପ୍ ରହିବା ପାତ୍ର ନୁହନ୍ତି । ସେ

କହିଲେ, "କିଛି କାରଣ ନ ଥାଇ କେହି କେବେ ହସେ ? ତୁମ ହସର କିଛି ନା କିଛି କାରଣ ଥିବ । ସେ କାରଣଟି ମୋତେ କୁହ ।" ରାଜା ଯେତେ ପ୍ରକାରେ ମନାକଲେ ସୁଦ୍ଧା ରାଣୀ ଜିଦ୍ ଧରି ବସିଲେ—ହସର କାରଣ ମୋତେ କୁହ । ଶେଷରେ ରାଜା ସତ କଥା କହିବାକୁ ବାଧ ହେଲେ । ଏଣେ ରାଣୀଙ୍କର ଆଉ ଏକ ଜିଦ୍ ହେଲା । ତମେ ଯେଉଁ ମନ୍ତ୍ର ବଳରେ ପିମ୍ପୁଡ଼ି ମାଛିଙ୍କର କଥା ବୁଝିପାରିଲ, ମୋତେ ସେ ମନ୍ତ୍ରଟି ଦିଅ । ତାହାହେଲେ ମୁଁ ମଧ୍ୟ ସେମାନଙ୍କ କଥା ବୁଝିପାରିବି । ଏବେ ରାଜା ମହାଅଡ଼ୁଆରେ ପଡ଼ିଲେ । ସେ କହିଲେ, "ତୁମକୁ ଏ ମନ୍ତ୍ର ଦେଲେ ମୋତେ ନିଆଁରେ ପୋଡ଼ିହୋଇ ମରିବାକୁ ହେବ ।" ରାଣୀ ଜିଦ୍ ଧରିଲେ, "ଯାହା ହେଲେ ହେଉ, ମୁଁ ତୁମଠାରୁ ମନ୍ତ୍ର ଶିଖିବି ।"

ଶେଷରେ ରାଜା କହିଲେ, "ଯେବେ ତୁମେ ମୋ ପ୍ରାଣର ଆଶା ଛାଡ଼ି ମନ୍ତ୍ର ଶିଖିବାକୁ ଚାହୁଁଛ, ତେବେ ଚାଲ, ବଗିଚାରେ ତୁମକୁ ମନ୍ତ୍ର ଦେଇ ମୁଁ ନିଆଁରେ ପ୍ରାଣ ହରାଇବି ।" ରାଜା ଗୋଟିଏ ରଥରେ ବସି ଉଦ୍ୟାନକୁ ଯିବାକୁ ବାହାରିଲେ । ଦେବରାଜ ଶକ୍ର ସ୍ୱର୍ଗରେ ଥାଇ ରାଜାଙ୍କର ଏହି କାର୍ଯ୍ୟ ଜାଣିପାରି ଭାବିଲେ, "ରାଜା ସେନକ ନାରୀର ବଶବର୍ତ୍ତୀ ହୋଇ ନିଜର ଜୀବନ ତ୍ୟାଗ କରିବାକୁ ବସିଛନ୍ତି; ତାଙ୍କୁ ଏହି ଉଦ୍ୟମରୁ ବିରତ କରି ତାଙ୍କ ଜୀବନ ରକ୍ଷା କରିବାକୁ ହେବ । ତେଣୁ ସେ ନିଜେ ଗୋଟିଏ ଅଣ୍ଡିରା ଛେଳି ରୂପ ଧରିଲେ ଓ ଜଣେ ଅପ୍‌ସରାକୁ ଗୋଟିଏ ମାଈ ଛେଳି ରୂପ ଦେଇ ରାଜା ସେନକଙ୍କ ଉଦ୍ୟାନ ନିକଟକୁ ଆସିଲେ ଓ ତାଙ୍କ ରଥର ସମ୍ମୁଖରେ ଛିଡ଼ାହେଲେ । ଶକ୍ର ଏପରି ମାୟା କରିଥିଲେ ଯେ ରାଜା ଓ ତାଙ୍କ ରଥରେ ଲାଗିଥିବା ଅଶ୍ୱମାନଙ୍କ ଛଡ଼ା ଅନ୍ୟ କେହି ତାଙ୍କୁ ବା ଅପ୍‌ସରାକୁ ଦେଖି ପାରୁ ନ ଥିଲେ । ଅଣ୍ଡିରା ଛେଳିଟି

ମାଣ୍ଡ ଛେଳି ସହିତ ରମଣ କରିବା ଭଳି ଭାବଭଙ୍ଗୀ ଦେଖାଇଲା ।
ରଥର ଗୋଟିଏ ଅଶ୍ୱ ତାହା ଦେଖି ତାକୁ କହିଲା, ମୁଁ ଶୁଣିଥିଲି
ଯେ ଛେଳିମାନେ ମୂର୍ଖ ଓ ନିର୍ଲଜ୍ଜ; କିନ୍ତୁ ଏବେ ତାହା ଆଖିରେ
ଦେଖିଲି । ଏତେ ଲୋକଙ୍କ ସମକ୍ଷରେ ଏଭଳି କାର୍ଯ୍ୟ କରିବାକୁ
ତୁମର ଲଜ୍ଜା ହେଉନାହିଁ ? ଗୋପନ ସ୍ଥାନରେ ଏକାନ୍ତରେ ରମଣ-
କ୍ରିୟା କରାଯାଏ; କିନ୍ତୁ ତୁମେ ସର୍ବସାଧାରଣରେ ସେହି କାର୍ଯ୍ୟ
କରିବାକୁ ଯାଉଥିବାରୁ ମୁଁ ଭାବୁଛି; ତୁମେ ନିତାନ୍ତ ମୂର୍ଖ ଓ
ନିର୍ଲଜ୍ଜ ।"

ଅଶ୍ୱିରା ଛେଳିଟି ଉତ୍ତର କଲା, "ତୁମେ ତ ଊଣା ମୂର୍ଖ
ନୁହଁ ! ଆଚ୍ଛା, ତୁମଠାରେ ଲଗାମ ଓ କଳିଆରି ଲଗିଥିଲା ବେଳେ
ତୁମେ ବାଧ୍ୟହୋଇ ସଇସର କଥା ମାନି ରହିଥାଅ । ତୁମଠାରେ
ଲଗାମ ଓ କଳିଆରି ନ ଥିଲାବେଳେ ତୁମେ ସ୍ୱଚ୍ଛନ୍ଦରେ ପଳାଇ
ପାରନ୍ତ; କିନ୍ତୁ ତୁମେ ତାହା କର ନାହିଁ ତେଣୁ ତୁମେ ମଧ୍ୟ ମୂର୍ଖ !
ତୁମେ ଯେଉଁ ସେନକଙ୍କୁ ରଥରେ ବସାଇ ନେଉଛ, ସେ ତୁମଠାରୁ
ବଳି ମୂର୍ଖ ।"

ସେନକ ରଥରେ ବସି ଛେଳି ଓ ଘୋଡ଼ାଙ୍କର କଥାବାର୍ତ୍ତା
ଶୁଣୁଥିଲେ । ଛେଳି ତାଙ୍କ ବିଷୟରେ ଏଭଳି ମତ ଦେବାରୁ ସେ
ଆହୁରି ମନୋଯୋଗ ଦେଇ ଦୁହିଁଙ୍କର କଥାବାର୍ତ୍ତା ଶୁଣିବାକୁ
ଲଗିଲେ ।

ଅଶ୍ୱମାନେ କହିଲେ, "ତୁମେ ଆମକୁ ନିର୍ବୋଧ, ମୂର୍ଖ
ଯାହା କିଛି କହ, ସେଥିରେ କ୍ଷତି ନାହିଁ; କିନ୍ତୁ ରାଜା ସେନକଙ୍କୁ
ଆମଠାରୁ ନିର୍ବୋଧ ବୋଲି ମଧ୍ୟ କହୁଛ କିପରି ? ଆମେ ଜାଣିବାରେ
ସେ ବିବେକୀ, ଧାର୍ମିକ ।"

ଛେଳି କହିଲା, "ଯେଉଁ ରାଜା ତାର ଧନସମ୍ପତ୍ତି ସବୁ ତାର ରାଣୀକୁ ଦେଇପକାଏ, ସେ ନିଶ୍ଚୟ ନିର୍ବୋଧ । କାରଣ ପତ୍ନୀକୁ ଯେତେ ଦେଲେ ମଧ୍ୟ ସେ ସ୍ୱାମୀପ୍ରତି ଚିରକାଳ ଅନୁରକ୍ତା ରହେନାହିଁ । ଯେଉଁ ଲୋକ ନିଜର ଜୀବନକୁ ସ୍ତ୍ରୀ ହାତରେ ସମର୍ପି ଦିଏ ସେ ମହାମୂର୍ଖ ନୁହେଁ କି ?"

ସେନକ ଛେଳି କଥାର ମର୍ମ ବୁଝିପାରି ପଚାରିଲେ, "ତୁମେ ମୋର ଅବସ୍ଥା ଜାଣିପାରିଛ । ତୁମେ ଯେ ମୋର ମଙ୍ଗଳ ଚାହଁ ଏଥିରେ ସନ୍ଦେହ ନାହିଁ । ଏ ପରିସ୍ଥିତିରେ ମୋର କର୍ତ୍ତବ୍ୟ କଅଣ ବୁଝାଇ ଦିଅ ।"

ଛେଳି କହିଲା, "ହେ ରାଜା, ପ୍ରତ୍ୟେକ ପ୍ରାଣୀ ପକ୍ଷରେ ତାର ନିଜର ଜୀବନଟି ହେଉଛି ସବୁଠାରୁ ଅଧିକ ପ୍ରିୟ । ପତ୍ନୀ, ପୁତ୍ର, କନ୍ୟା, ଧନ, ଜନ କେହି ଜୀବନଠାରୁ ବଡ଼ ନୁହେଁ । ତେଣୁ ଅନ୍ୟ କୌଣସି ଲାଭ ଆଶାରେ ନିଜର ଜୀବନକୁ ତ୍ୟାଗ କରିବା ଉଚିତ ନୁହେଁ । ପତ୍ନୀର ଅଭିଳାଷ ପୂର୍ଣ୍ଣ କରିବାକୁ ଆପଣ ନିଜ ଜୀବନ ଦେବାକୁ ଯାଉଅଛନ୍ତି । ଜୀବନଠାରୁ ବଳି ଆଉ କିଛି ନାହିଁ; ଜୀବନ ଥିଲେ ଯେକୌଣସି ଅଭିଳାଷ ପୂରଣ କରାଯାଇ ପାରିବ ।"

ରାଜା ଆନନ୍ଦିତ ହୋଇ କହିଲେ, "ମୁଁ ଏବେ ବୁଝୁଛି; ପତ୍ନୀର ସନ୍ତୋଷ ପାଇଁ ନିଜର ଜୀବନ ହରାଇବା ଉଚିତ ନୁହେଁ । ଆପଣ ମୋର ମହାନ୍ ଉପକାର କରିଅଛନ୍ତି । ଆପଣ କିଏ, କେଉଁଠାରୁ ଆସିଛନ୍ତି ?"

ବୋଧିସତ୍ତ୍ୱ ଉତ୍ତର କଲେ, "ମୁଁ ଦେବରାଜ ଶକ୍ର । ତୁମର ଜୀବନ ରକ୍ଷା କରିବା ପାଇଁ ଛେଳି ରୂପରେ ଆସିଥିଲି ।"

ତହୁଁ ରାଜା ପଚାରିଲେ, "ମୁଁ ମନ୍ତ୍ରଟି ଦେବି ବୋଲି କହିସାରିଛି । ଏବେ ନିଜର ବାକ୍ୟଭଙ୍ଗ କରିବି କିପରି ?"

ବୋଧିସତ୍ତ୍ୱ କହିଲେ, "କୌଶଳ କଲେ ସେ ଆଉ ମନ୍ତ୍ର ଶିଖିବାକୁ ଚାହିଁବେ ନାହିଁ । କେବଳ କହନ୍ତୁ ଉତ୍ତମ ମଧ୍ୟମର ବ୍ୟବସ୍ଥା କଲେ ହେଲା ?" ଏହା କହି ବୋଧିସତ୍ତ୍ୱ ନିଜରୂପ ଧରି ଅପ୍‌ସରା ସହିତ ସ୍ୱର୍ଗକୁ ଫେରିଗଲେ ।

ରାଜା ଉପବନରେ ବସି ରାଣୀଙ୍କୁ ଡକାଇ କହିଲେ, "ଆସ ମନ୍ତ୍ର ନେବାପାଇଁ ପ୍ରସ୍ତୁତ ହୁଅ । ଏ ମନ୍ତ୍ର ଶିଖିବାକୁ ହେଲେ ପ୍ରଥମେ ଶହେ ପ୍ରହାର ଖାଇବାକୁ ହୁଏ । ପ୍ରହାରବେଳେ କାନ୍ଦିଲେ ମନ୍ତ୍ରର ଶକ୍ତି ନଷ୍ଟ ହୋଇଯାଏ । ତେଣୁ ଆସ, ଆଗେ ଶହେ ପ୍ରହାର ନିଅ ତାପରେ ମୁଁ ମନ୍ତ୍ର କହିଦେବି ।"

ମନ୍ତ୍ରଟି ଶିଖି ରାଣୀ ସବୁ ଜୀବଙ୍କର ଭାଷା ବୁଝିବେ ବୋଲି ଏତେ ଅଗ୍ରହୀ ହୋଇଥିଲେ ଯେ ସେ ଏଥିକରେ ନିରସ୍ତ ହେଲେ-ନାହିଁ । ସେ ପ୍ରହାର ସହ୍ୟକରି ମଧ୍ୟ ମନ୍ତ୍ର ଶିଖିବାର ଇଚ୍ଛା ପ୍ରକାଶ କଲେ । ତହୁଁ ରାଜାଙ୍କ ଆଦେଶରେ ଜଣେ ଭୃତ୍ୟ ତାଙ୍କ ପିଠିରେ ବେତ୍ରାଘାତ କରିବାକୁ ଲାଗିଲା । ଦୁଇ ତିନି ପ୍ରହାର ପରେ ରାଣୀ କାନ୍ଦି କାନ୍ଦି କହିଲେ, "ଥାଉ, ଥାଉ, ମୋର ମନ୍ତ୍ର ଜାଣିବା ଦରକାର ନାହିଁ ।"

ମାତ୍ର ରାଜା କହିଲେ, "ହେ ପାପୀୟସି ! ତୁ ମନ୍ତ୍ର ଶିଖିବା ପାଇଁ ମୋତେ ମରଣ ମୁହଁକୁ ଠେଲିଦେବାକୁ ବସିଥିଲୁ । ଏବେ କହୁଛୁ, ତୋର ମନ୍ତ୍ର ଦରକାର ନାହିଁ । ଯାଆ, ତୋର ମୁଖ ଦର୍ଶନ କଲେ ମଙ୍ଗଳ ନାହିଁ ।"

ରାଣୀ ଅପମାନ ପାଇ ରହିଲେ । ସେ ଜୀବନରେ କେବେ-ହେଲେ ଆଉ ମନ୍ତ୍ର ଶିଖିବାର ନାମ ଧରି ନଥିଲେ । ***

## ଦଧିବାହନ ଜାତକ

ଅତି ପ୍ରାଚୀନ କାଳରେ କାଶୀ ରାଜ୍ୟରେ ଚାରୋଟି ଭାଇ ଥିଲେ । ସେମାନଙ୍କ ମଧ୍ୟରେ ସ୍ନେହ ଓ ସଦ୍ଭାବ ରହିଥିଲା । ସଂସାର ଅନିତ୍ୟ; ସୁଖ ବୋଲି ଯାହାକୁ ଲୋକେ କହନ୍ତି, ତାହା ପ୍ରକୃତରେ ଦୁଃଖର ନାମାନ୍ତର ମାତ୍ର । ଏହିପରି ବିଚାରି ଚାରିଭାଇଯାକ ସନ୍ନ୍ୟାସ ଅବଲମ୍ବନ କଲେ । ଗ୍ରାମ ଓ ସହର ତ୍ୟାଗକରି ସେମାନେ ହିମାଳୟର ପାଦଦେଶରେ ଚାରୋଟି କୁଟୀର ନିର୍ମାଣ କରି ସେଥିରେ ବାସକରିବାକୁ ଲାଗିଲେ । ବନର ଫଳମୂଳ ସେମାନଙ୍କର ଖାଦ୍ୟ ଓ ନଦୀ ଝରଣାର ଜଳ ସେମାନଙ୍କର ପାନୀୟ ହେଲା ।

କେତେ ବର୍ଷପରେ ଜ୍ୟେଷ୍ଠଭ୍ରାତା ସ୍ୱର୍ଗପ୍ରାପ୍ତ ହେଲେ ଓ ନିଜର ପୁଣ୍ୟବଳରେ ସ୍ୱର୍ଗରେ ଶକ୍ରରୂପେ ଜନ୍ମଲାଭ କଲେ । ସ୍ୱର୍ଗରେ ଦେବରାଜ ପଦ ଲାଭ କଲେ ହେଁ ସେ ପୂର୍ବଜନ୍ମର ବିଷୟ ସ୍ମରଣ କରି ପ୍ରତି ସପ୍ତାହରେ ଥରେ ଲେଖାଏଁ ପୃଥିବୀକୁ ଆସି ଅନ୍ୟ ତିନିଭାଇଙ୍କୁ ସାହାଯ୍ୟ କରୁଥିଲେ । ଦିନେ ସେ ଏହିପରି ଭାଇମାନଙ୍କ ପାଖକୁ ଆସି ତିନିଙ୍କ ମଧ୍ୟରେ ଜ୍ୟେଷ୍ଠଭାଇ ପାଖକୁ ଯାଇ କହିଲେ, "ତୁମର କ'ଣ ଦରକାର ?"

ସେ କହିଲେ, "ମୋର ଗୋଟିଏ ରୋଗ ଦେଖା ଦେଇଛି । ସେକ ହେଲେ ସେ ରୋଗ ଟିକିଏ ଉପଶମ ହୁଏ । ମୋର କିଛି କାଠ ଦରକାର ।"

ଶକ୍ର ତାଙ୍କୁ ଗୋଟିଏ କୁରାଢ଼ି ଦେଇ କହିଲେ, "ତୁମେ ଏହାକୁ ଧରି ମୋଟ ଧାର ଉପରେ ହାତ ମାରି କହିବ, 'କାଠ

ଆଣି ନଆଁ କର । ସଙ୍ଗେ ସଙ୍ଗେ କୁର୍‌ହାଡ଼ କାଠ ନେଇ ଆସି ତୁମ ପାଇଁ ନଆଁ କରିଦେବ ।”

ତତ୍ପରେ ଶକ୍ର ତାଙ୍କ ତଳଭାଇ ପାଖକୁ ଯାଇ ପଚାରିଲେ, “ତୁମର କଅଣ ଦରକାର ?”

ସେ କହିଲେ, “ମୋର କିଛି ଦରକାର ନାହିଁ; କିନ୍ତୁ ଗୋଟାଏ ବିଷୟରେ ସାହାଯ୍ୟ କରିପାରିଲେ ଭଲ ହେବ । ମୋର କୁଡ଼ିଆ ପାଖରେ ହାତୀମାନଙ୍କର ଯିବାଆସିବା ବାଟ । ସେମାନେ ମୋତେ ଅସ୍ଥିର କରୁଅଛନ୍ତି । ସେମାନଙ୍କ ବାଟ ବନ୍ଦ କରିବାର କୌଣସି ଉପାୟ କର ।”

ଶକ୍ର ତାଙ୍କୁ ଗୋଟିଏ ଢୋଲ ଦେଇ କହିଲେ, “ଏହି ଢୋଲର ଡାହାଣ ପାଖେ ଆଘାତ କଲେ ହାତୀମାନେ ପଳାଇ ଯିବେ । ବାଁ ପାଖେ ଆଘାତ କଲେ ସେମାନେ ତୁମ ସହିତ ବନ୍ଧୁତା କରିବେ ଓ ଚତୁରଙ୍ଗ ସୈନ୍ୟ ଦେଇ ତୁମକୁ ସାହାଯ୍ୟ କରିବେ ।”

ଶେଷରେ ଶକ୍ର ସବାସାନ ଭାଇ ପାଖକୁ ଯାଇ ସେହିପରି ପଚାରିବାରୁ ସେ କହିଲେ, “ମୋର ଗୋଟାଏ ରୋଗ ହୋଇଛି । ଦହି ଖାଇବା ମୋର ଦରକାର ପଡ଼ୁଛି । ମୋତେ କିଛି ଦହି ଦିଅ ।”

ଶକ୍ର ତାଙ୍କୁ ଗୋଟିଏ ପାତ୍ର ଦେଇ କହିଲେ, ଏହାକୁ ହଲାଇ ହଲାଇ ତୁମେ ଯାହା ମାଗିବ, ତାହା ଏଥିରୁ ବାହାରିବ । ଦହି, ଦୁଧ, ଘିଅ, ଟଙ୍କା, ସୁନା ଯାହା ଇଚ୍ଛା ତାହା ମାଗିପାର । ଏହାଦ୍ୱାରା ତୁମେ ଇଚ୍ଛାକଲେ ଗୋଟାଏ ରାଜ୍ୟ ମଧ୍ୟ ପାଇ ପାରିବ ।”

ଶକ୍ର ସ୍ୱର୍ଗକୁ ଫେରିଗଲେ । ତିନି ଭାଇଙ୍କର ଇଚ୍ଛା ପୂର୍ଣ୍ଣ ହେଲା । କୁର୍‌ହାଡ଼ ବଡ଼ ଭାଇଙ୍କୁ ନଆଁ ଦେଲା; ଢୋଲ ଯୋଗୁ ମଝିଆଁ ଭାଇ ହାତୀମାନଙ୍କୁ ଦୂରରେ ରଖିଲେ ଓ ସାନ ଭାଇ ପାତ୍ରରୁ ଯଥେଷ୍ଟ ଦହି ପାଇଲେ ।

ଏହି ସମୟରେ ଗୋଟିଏ ଗ୍ରାମ ଧ୍ୱସ୍ତ ବିଧ୍ୱସ୍ତ ହୋଇଯିବାରୁ ଲୋକେ ତାହାକୁ ଛାଡ଼ି ଚାଲିଗଲେ । ସେହି ଗ୍ରାମର ଧ୍ୱଂସ ସ୍ତୂପରେ ଗୋଟିଏ ବରାହ ଆସି ବାସକରିବାକୁ ଲାଗିଲା । ଦିନେ ସେ ଧ୍ୱଂସସ୍ତୂପ ମଧ୍ୟରୁ ଗୋଟିଏ ରତ୍ନ ପାଇଲା । ଏହାର ବିଚିତ୍ର ଶକ୍ତି ଥିଲା । ଏହାକୁ ବରାହ ଦାନ୍ତରେ ଧରିବା ମାତ୍ରେ ସେ ଆକାଶ ଉପରକୁ ଉଠି ଉଡ଼ିବାକୁ ଲାଗିଲା । ଶୂନ୍ୟରେ ରହି ସେ ସମୁଦ୍ର ମଧ୍ୟରେ ଗୋଟିଏ ଦ୍ୱୀପ ଦେଖିଲା । ଦ୍ୱୀପଟିର ରମଣୀୟ ଦୃଶ୍ୟରେ ମୁଗ୍ଧ ହୋଇ ସେ ସେହି ଦ୍ୱୀପର ଗୋଟିଏ ବୃକ୍ଷ ମୂଳରେ ବାସକରିବାକୁ ଲାଗିଲା ।

କାଶୀ ରାଜ୍ୟରେ ଜଣେ ଯୁବକ ଥିଲା । ସେ କର୍ମକୁଣ୍ଠ ଓ ବିଳାସପରାୟଣ ହୋଇଥିବାରୁ ତାର ପିତାମାତା ତାକୁ ଗୃହରୁ ତଡ଼ିଦେଲେ । ସେ ଇତସ୍ତତଃ ଭ୍ରମଣ କରୁକରୁ ଗୋଟିଏ ବନ୍ଦରରେ ଉପସ୍ଥିତ ହେଲା । ଗୋଟିଏ ଜାହାଜରେ ସେ ଖଲାସି କାର୍ଯ୍ୟରେ ନିଯୁକ୍ତ ହୋଇ ପୃଥିବୀର ନାନାସ୍ଥାନ ଦେଖିଲା । ଦୈବାତ୍ ସମୁଦ୍ରରେ ଯାଉଥିବା ସମୟରେ ଜାହାଜ ଜଳମଗ୍ନ ହେଲା । ଯୁବକଟି ଜୀବନ ରକ୍ଷାପାଇଁ ସନ୍ତରଣ କରି କରି ସେହି ଦ୍ୱୀପରେ ଲାଗିଲା । ଖାଦ୍ୟ ଅନ୍ୱେଷଣ କରୁ କରୁ ସେ ଗୋଟିଏ ବୃକ୍ଷମୂଳରେ ପହଞ୍ଚିଲା । ସେତେବେଳକୁ ବରାହ ରତ୍ନଟିକୁ ପାଖରେ ରଖି ବୃକ୍ଷମୂଳରେ ଶୋଇଥିଲା । ଯୁବକ ଅମୂଲ୍ୟ ରତ୍ନଟିକୁ ଦେଖି ତାହାକୁ ନେଇ-ଆସିଲା । ରତ୍ନଟିକୁ ଧରିବାକ୍ଷଣି ସେ ଆକାଶମାର୍ଗକୁ ଉଠିଗଲା । କିଛି ଦୂର ଯାଇ ସେ ଗୋଟିଏ ବଟବୃକ୍ଷ ଉପରେ ଓହ୍ଲାଇ ଭାବିଲା, "ଏହି ରତ୍ନର ପ୍ରଭାବରେ ବରାହ ଆକାଶମାର୍ଗରେ ଏ ଦ୍ୱୀପକୁ ଆସି ରହିଅଛି । ଆଗେ ଏହାକୁ ବଧ କରି ଏହାର ମାଂସ ଖାଇବି । ତାପରେ ଅନ୍ୟତ୍ର ଯିବି ।"

ଏହା ବଗୁର ସେ ବଗହ ଉପରକୁ କେତୋଟି ବଟଫଳ ନିକ୍ଷେପ କଲା । ସେ ନିଦ୍ରାରୁ ଉଠି ନିକଟରେ ଚନ୍ଦ୍ରଟିକୁ ଦେଖି ନ ପାରି ଭୟରେ ଏଣେତେଣେ ଦଉଡ଼ିଲା । ତାହାର ଏ ଅବସ୍ଥା ଦେଖି ଯୁବକ ହସିଉଠିଲା । ତହୁଁ ବଗହ କ୍ରୋଧରେ ତାକୁ ଧରିବାପାଇଁ ଗଛ ଉପରକୁ ଲମ୍ଫ ପ୍ରଦାନ କଲା । କିନ୍ତୁ ଗୋଟିଏ ଶାଖାରେ ତାହାର ମସ୍ତକ ବାଜିବାରୁ ସେ ପ୍ରାଣତ୍ୟାଗ କଲା । ଯୁବକ ବୃକ୍ଷରୁ ଓହ୍ଲାଇ ଆସି ବଗହଟିକୁ ଅଗ୍ନିରେ ଦଗ୍ଧ କରି ତାର ମାଂସରେ ଉଦର ପୂର୍ତ୍ତି କଲା ।

ତତ୍ପରେ ସେ ଚନ୍ଦ୍ର ସାହାଯ୍ୟରେ ପୁଣି ଶୂନ୍ୟମାର୍ଗରେ ଗତି-କରିବାକୁ ଲଗିଲା । ଅନେକ ଦୂର ଯିବାପରେ ସେ ହିମାଳୟର ପାଦଦେଶରେ ପହଞ୍ଚି ଗୋଟିଏ କୁଟୀର ଦେଖିଲା । ସେ ସେହି ସ୍ଥାନରେ ଆକାଶରୁ ଅବତରଣ କରି ପ୍ରଥମେ ବଡ଼ଗଛର କୁଟୀରକୁ ଗଲା । ସନ୍ନ୍ୟାସୀ ତାକୁ ଯଥାବିଧି ଆତିଥ୍ୟ ପ୍ରଦର୍ଶନ କରି କୁଟୀରରେ ରଖିଲେ । ଦୁଇ ତିନିଦିନ ରହିବା ପରେ ସେ କୁଠାରଟିର ଅଦ୍ଭୁତ ଶକ୍ତି ଲକ୍ଷ୍ୟ କରିପାରିଲା ଓ ତାହାକୁ ହସ୍ତଗତ କରିବାପାଇଁ ଲୋଭ କଲା । ସେ ନିଜର ଚନ୍ଦ୍ରଟିର ଗୁଣ ବର୍ଣ୍ଣନା କରି ତାହା ପରିବର୍ତ୍ତରେ କୁଠାରଟି ନେବାର ଇଚ୍ଛା ପ୍ରକାଶ କଲା । ସନ୍ନ୍ୟାସୀଙ୍କର ମଧ୍ୟ ଆକାଶରେ ବିହାର କରିବାର ଅଭିଳାଷ ଜନ୍ମିଲା । ତେଣୁ ସେ ନିଜର କୁଠାରଟି ଦେଇ ଚନ୍ଦ୍ରଟି ରଖିଲେ ।

ଯୁବକ କୁଠାରକୁ ଧରି କିଛିଦୂର ଯିବାପରେ ତାକୁ ଆଘାତ କରି କହିଲେ, "ଯାଆ, ସେ ସନ୍ନ୍ୟାସୀକୁ ମାରି ତାଠାରୁ ମୋ ଚନ୍ଦ୍ର ନେଇଆ ।" କୁଠାର ଏହି ଆଦେଶ ପାଳନ କରି ଚନ୍ଦ୍ରଟି ଆଣି ତାକୁ ଦେଲା ।

ଯୁବକ କୁଠାରକୁ ଗୋଟିଏ ଗୋପନ ସ୍ଥାନରେ ରଖିଦେଇ ମଝିଆ ଭାଇଙ୍କ କୁଡ଼ିଆକୁ ଗଲା । ତାଙ୍କ ପାଖରେ ଦୁଇ ଖଣ୍ଡବଣ ରହିବା ସେ ଢୋଲଟିର ଅଦ୍ଭୁତ ଶକ୍ତି ଜାଣିପାରିଲା । ତାଙ୍କୁ ନିଜର ରତ୍ନର ଗୁଣ କହି ଲୋଭ ଜନ୍ମାଇ ତାଙ୍କଠାରୁ ଢୋଲଟିକୁ ନେଲା ଓ ତା ପରିବର୍ତ୍ତରେ ରତ୍ନଟି ଦେଲା । କିନ୍ତୁ ସେଠାରୁ ଯିବା ପରେ କୁଠାରକୁ ଆଦେଶ ଦେଲା, "ଯାଅ, ସେ ସନ୍ନ୍ୟାସୀକୁ ମାରି ତାଠାରୁ ରତ୍ନ ଆଣି ମୋତେ ଦେ ।" କୁଠାର ତାହାହିଁ କଲା ।

ଠିକ୍ ଏହି କୌଶଳରେ ସେ ସାନ ଭାଇର ପାତ୍ରଟିକୁ ହସ୍ତଗତ କଲା । ଏହାପରେ ସେ ଅଦ୍ଭୁତଶକ୍ତିସମ୍ପନ୍ନ ଚାରୋଟି ବସ୍ତୁର ଅଧିକାରୀ ହେଲା ।

ଏବେ ସେ ଆକାଶମାର୍ଗରେ ଯାଇ ବାରଣସୀ ନିକଟରେ ଉପସ୍ଥିତ ହେଲା ଓ ରାଜାଙ୍କ ପାଖକୁ ସମ୍ବାଦ ଦେଲା—"ମୋ ହସ୍ତରେ ରାଜ୍ୟ ଅର୍ପଣ କର, ନଚେତ୍ ଆସି ମୋ ସଙ୍ଗେ ଯୁଦ୍ଧ କର ।"

ରାଜା ଏହି ସମ୍ବାଦରେ କ୍ରୋଧାନ୍ଧ ହୋଇ ତାହାକୁ ଉଚିତ ଶିକ୍ଷା ଦେବାପାଇଁ ସୈନ୍ୟସାମନ୍ତ ସହ ବାହାରିଲେ । ଯୁବକ ଢୋଲରେ ଆଘାତ କଲାମାତ୍ରେ ସହସ୍ର ସହସ୍ର ସୈନ୍ୟ ଆବିର୍ଭୂତ ହେଲେ । ଯୁବକ ପାତ୍ରଟିକୁ ଆଘାତ କଲା । ସେଥିରୁ ଦହିର ଗୋଟିଏ ପ୍ରବଳ ସ୍ରୋତ ବାହାରି ରାଜାଙ୍କ ସୈନ୍ୟମାନଙ୍କୁ ଭସାଇ ନେଲା । ଯୁବକର ସୈନ୍ୟବଳ ଓ ଦହିର ସୁଅରେ ରାଜାଙ୍କ ସୈନ୍ୟ ମାନେ ବିନାଶପ୍ରାପ୍ତ ହେଲେ । ଶେଷରେ ଯୁବକ କୁଠାରକୁ ଆଘାତ କରି ଆଦେଶ ଦେଲା, "ଯାଅ କାଶୀରାଜାର ମୁଣ୍ଡ କାଟିଆଣି ମୋତେ ଦେ ।" ମୁହୂର୍ତ୍ତକ ମଧ୍ୟରେ କାଶୀରାଜାଙ୍କର ମସ୍ତକ ତାର ପାଦତଳେ ଭୂଲୁଣ୍ଠିତ ହେଲା ।

ଯୁବକ ତାର ସୈନ୍ୟଦଳ ଘେନି ନଗର ଅଧିକାର କଲା ଓ ନିଜକୁ ସିଂହାସନରେ ଅଭିଷିକ୍ତ କରାଇଲା । ଦଧିର ସ୍ରୋତଦ୍ୱାରା ରାଜ୍ୟ ଅଧିକାର କରିଥିବାରୁ ସେ ରାଜପଦରେ ବସି ଦଧିବାହନ ନାମ ଧାରଣ କଲା ।

ଦିନେ ରାଜା ନଦୀକୂଳରେ ବସି ନଦୀରେ ଜାଲ ପକାଉ-ଥିଲେ । ଜଳରେ ଭସି ଆସିଥିବା ଗୋଟିଏ ଆମ୍ବ ଜାଲରେ ପଡ଼ିଲା । ଏହି ଆମ୍ବଟିର ଆକାର ଅତି ବୃହତ୍ ଓ ଏହାର ରଙ୍ଗ ସୁନାର ରଙ୍ଗ ପରି ଥିଲା । ରାଜା ସେହି ଆମ୍ବକୁ ଖାଇ ଦେଖିଲେ, ଏହାର ରସ ଅମୃତତୁଲ୍ୟ ମଧୁର । ସେ ଟାକୁଆଟିକୁ ନେଇ ନିଜ ଉଦ୍ୟାନରେ ପୋତିଦେଲେ । ଯଥାସମୟରେ ଟାକୁଆରୁ ଗଛ ହୋଇ ଫୁଲ ଫଳ ଧରିଲା । ଫଳ ପାଚିବାରୁ ରାଜା ଉଦ୍ୟାନରେ ଏକ ବିରାଟ ଉତ୍ସବ କରାଇଲେ ଓ ବୃକ୍ଷଟିର ପୂଜା କରାଇଲେ । ଏହାର ଫଳ ମଧ୍ୟ ବୃହଦାକାର, ସ୍ୱର୍ଣ୍ଣାଭ ଓ ମଧୁର ଥିଲା । ରାଜା ଦଧିବାହନ ଏହି ଆମ୍ବକୁ ବନ୍ଧୁ ରାଜାମାନଙ୍କ ପାଖକୁ ଉପହାର ସ୍ୱରୂପ ପଠାଇଲେ; କିନ୍ତୁ ପଠାଇବା ପୂର୍ବରୁ ତାହାର ଟାକୁଆକୁ କଣାକରି ଦେଉଥିଲେ; ଯେପରିକି ଅନ୍ୟ କେହି ସେ ଜାତିର ଆମ୍ବଗଛ ଉତ୍ପାଦନ କରି ପାରିବେ ନାହିଁ ।

ରାଜାମାନେ ସେହି ଆମ୍ବର ଟାକୁଆ ପୋତିଲେ; କିନ୍ତୁ ସେଥିରୁ ଗଛ ହେଲା ନାହିଁ । ସେମାନେ ଅନୁସନ୍ଧାନ କରି ପ୍ରକୃତ କାରଣ ଜାଣିପାରିଲେ । ସେମାନଙ୍କ ମଧ୍ୟରୁ ଜଣେ ରାଜାଙ୍କର ଗୋଟିଏ ମାଳୀ ଥିଲା । ସେ ତାକୁ କହିଲେ, "ତୁ ଦଧିବାହନ ରାଜାଙ୍କ ଆମ୍ବଗଛର ଫଳକୁ ପିତା କରିଦେଇ ପାରିଲେ, ଯଥେଷ୍ଟ ପୁରସ୍କାର ପାଇବୁ ।"

ମାଳୀ ଏହି ଉଦ୍ଦେଶ୍ୟରେ ବାରଣସୀ ଯାଇ ରାଜା ଦଧି-ବାହନଙ୍କର ସାକ୍ଷାତ କଲା ଓ ବୃକ୍ଷଟିଏ ପ୍ରାର୍ଥନା କଲା । ନିଜର ମାଳୀକୁ ସାହାଯ୍ୟ କରିବା ପାଇଁ ସେ ଏହି ମାଳୀକୁ ନିଯୁକ୍ତ କଲେ। ଦୁଇ ମାଳୀ ରାଜାଙ୍କ ଉଦ୍ୟାନରେ କାର୍ଯ୍ୟ କଲେ । ନୂତନ ମାଳୀ ଅସମୟରେ ଗଛରେ ଫୁଲ ଉତ୍ପାଦନ କରାଇ ରାଜାଙ୍କୁ ସନ୍ତୁଷ୍ଟ କଲା । ଉଦ୍ୟାନକୁ ପୂର୍ବାପେକ୍ଷା ଅଧିକ ରମଣୀୟ କରି ରଖିଲା । ଶେଷରେ ରାଜା ଅତ୍ୟନ୍ତ ପ୍ରୀତ ହୋଇ ତାର ଉପରେ ଉଦ୍ୟାନର ସମସ୍ତ ଭାର ଅର୍ପଣ କରି ପୁରାତନ ମାଳୀକୁ ବାହାର କରିଦେଲେ । ଏବେ ସେ ତାର ମନ୍ଦ ଉଦ୍ଦେଶ୍ୟ ସାଧନ କରିବାର ସୁଯୋଗ ପାଇଲା । ଆମ୍ବଗଛଟିର ଚାରିପାଖରେ ସେ ନିମ୍ବ, କୋଶାତକୀ ପ୍ରଭୃତି ପିତାଗଛ ଲଗାଇଲା । ଏଗୁଡ଼ିକର ଡାଳପତ୍ର ସହିତ ଆମ୍ବଗଛର ଡାଳପତ୍ର ଛନ୍ଦି ହୋଇଗଲା । ଆମ୍ବ ଫଳିଲା ସତ; କିନ୍ତୁ ତାର ଫଳ ତିକ୍ତ ହେଲା । ଏହା ଜାଣିଲାକ୍ଷଣି ମାଳୀ ବାରଣସୀ ତ୍ୟାଗକରି ପଳାଇଲା ।

ଦିନେ ରାଜା ଗୋଟିଏ ଆମ୍ବ ନେଇ ଖାଇବାକୁ ବସିଲେ; କିନ୍ତୁ ପାଟିକୁ ନେବାମାତ୍ରେ କାଢ଼ି ଫିଙ୍ଗିଦେବାକୁ ବାଧ୍ୟ ହେଲେ ।

ଏହି ସମୟରେ ବୋଧିସତ୍ତ୍ୱ ରାଜାଙ୍କର ଜଣେ ପାରିଷଦରୂପେ ରହିଥିଲେ । ରାଜା ଗୁରୁତର ବିଷୟମାନଙ୍କରେ ତାଙ୍କର ପରାମର୍ଶ ନେଉଥିଲେ । ତାଙ୍କୁ ଡକାଇ ରାଜା ପଚାରିଲେ, "ଏହି ଆମ୍ବଗଛଟିର ଫଳ ଅମୃତପରି ମଧୁର ଥିଲା । ଏବେ ନିମ୍ବପରି ପିତା ଲାଗୁଛି କାହିଁକି ?"

ବୋଧିସତ୍ତ୍ୱ କହିଲେ, "ଉଦ୍ୟାନକୁ ଯାଇ ଦେଖନ୍ତୁ, ଆମ୍ବ-ଗଛର ଚେର, ଡାଳ, ପତ୍ର ସହିତ ନିମ୍ବ କୋଶାତକୀ ପ୍ରଭୃତି ପିତା ଗଛର ଚେର, ଡାଳ, ପତ୍ର ଛନ୍ଦି ହୋଇ ରହିଛି । ଲୋକେ ଯେତେ

ସାଧୁ ହୋଇଥିଲେହେଁ ଅସାଧୁ ଲୋକର ସଂସର୍ଗରେ ରହିଲେ ସେ ଅସାଧୁ ହେବ ହିଁ ହେବ ।”

• ବୋଧିସତ୍ତ୍ୱଙ୍କ ଉପଦେଶ ଅନୁସାରେ ଆମ୍ବଗଛ ନିକଟରୁ ଅନ୍ୟ ଗଛମାନଙ୍କୁ ନଷ୍ଟକରି ଦିଆଗଲା । ଏପରିକି ଭୂମି ଭିତରୁ ସେମାନଙ୍କର ଚେରସୁଦ୍ଧା ବାହାର କରାଗଲା । ନୂତନ ମାଟି ଆମ୍ବ ଗଛମୂଳରେ ଦିଆହେଲା । କିଛିକାଳ ପରେ ଆମ୍ବଟଛର ଫଳ ପୂର୍ବପରି ମଧୁର ହେଲା । ରାଜା ନିଜର ପୁରାତନ ମାଳୀକୁ ଡକାଇ ତାକୁ ପୁନରାୟ କାର୍ଯ୍ୟରେ ନିଯୁକ୍ତ କଲେ । ***

## ଅଣ୍ଡଭୂତ ଜାତକ

ବାରାଣସୀରେ ବ୍ରହ୍ମଦତ୍ତ ନାମରେ ଜଣେ ରାଜା ଥିଲେ । ତାଙ୍କର ପାଟରାଣୀଙ୍କ ଗର୍ଭରେ ବୋଧିସତ୍ତ୍ୱ ପୁତ୍ରରୂପେ ଜନ୍ମଗ୍ରହଣ କରିଥିଲେ । ବୋଧିସତ୍ତ୍ୱ ବୟଃପ୍ରାପ୍ତ ହେବାରୁ ଗୁରୁଙ୍କ ନିକଟରୁ ବିବିଧ ଶାସ୍ତ୍ର ଶିକ୍ଷାକରି ପାରଙ୍ଗମ ହେଲେ ଓ ପିତାଙ୍କ ମୃତ୍ୟୁପରେ ରାଜସିଂହାସନ ଆରୋହଣ କଲେ । ତାଙ୍କର ନ୍ୟାୟପୂର୍ଣ୍ଣ ଶାସନରେ ରାଜ୍ୟରେ ସର୍ବତ୍ର ସୁଖଶାନ୍ତି ବିଦ୍ୟମାନ ଥିଲା ।

ପଶାଖେଳ ବୋଧିସତ୍ତ୍ୱଙ୍କର ଅତି ପ୍ରିୟ ଥିଲା ଓ ପ୍ରାୟ ପ୍ରତି-ଦିନ ସେ ରାଜପୁରୋହିତଙ୍କ ସହିତ ପଶା ଖେଳୁଥିଲେ । ରୁପାର ପଶାପାଲି ଓ ସୁନାର ପଶାକାଠି ଯୋଗେ ଦୁଇ ବନ୍ଧୁଙ୍କର ଖେଳ ହେଉଥିଲା । ରାଜା ଖେଳିବା ସମୟରେ ଗୋଟିଏ କବିତା ବୋଲୁଥିଲେ—

ବିଧାତା ବିଧାନ ନୁହଇ ଆନ
ନଦୀଜଳ କରେ ନୀଚ ଗମନ;
ପରପୁରୁଷରେ ରସେ ଯୁବତୀ
ଅଛି କେଉଁ ନାରୀ ନୋହି ଅସତୀ ?

ପଶାକାଠି ପକାଇଲାବେଳେ ରଜା ଏହି ପଦଟି ବୋଲନ୍ତି ଓ ତାଙ୍କ ଇଚ୍ଛା ଅନୁସାରେ ଦାନ ପଡ଼େ । ଫଳରେ ରଜା ଖେଳରେ ଜିତନ୍ତି । ବାଜି ରଖି ଖେଳ ହେଉଥାଏ । କ୍ରମେ ରାଜପୁରୋହିତ ସବୁ ହରାଇବାକୁ ବସିଲେ । ସେ ଭାବିଲେ, "ରାଜା କହୁଛନ୍ତି ଯେ ନାରୀମାନେ ଅସତୀ । ମୁଁ ଯଦି ଗୋଟିଏ ସତୀ ସ୍ତ୍ରୀ ଦେଖେଁ ତେବେ ରଜାଙ୍କର କଥା ମିଥ୍ୟା ହେବ ଓ ସେ ନିଶ୍ଚୟ ହାରିବେ ।" ତେଣୁ ସେ ଗୋଟିଏ ସ୍ତ୍ରୀର ସନ୍ଧାନ ନେଲେ । କିନ୍ତୁ କାହାକୁ ସତୀ ବୋଲି କିପରି ଜାଣିବେ ?

ତେଣୁ ସେ ସ୍ଥିର କଲେ, "ଗୋଟିଏ ଶିଶୁକନ୍ୟାକୁ ଆଣି ପାଳିବେ । କନ୍ୟାଟିକୁ ସେ ସର୍ବଦା କବାଟରେ ଗୁବ ଦେଇ ଘର ଭିତରେ ରଖିବେ । ସେ ଯେପରି କୌଣସି ପୁରୁଷକୁ ନ ଦେଖେ ତାହାର ବ୍ୟବସ୍ଥା କରିବେ ।" ସେ ଭାବିଥିଲେ ଯେ ଏପରି କଲେ ବାଳିକାଟିର ସତୀତ୍ୱ ଅକ୍ଷୁଣ୍ଣ ରହିବ ।

ଦୈବାତ୍ ସେ ଗୋଟିଏ ଦରିଦ୍ର ଗର୍ଭବତୀ ସ୍ତ୍ରୀକୁ ଦେଖିଲେ । ନିଜର ବିଦ୍ୟା ବଳରେ ବ୍ରାହ୍ମଣ ଜାଣିପାରିଲେ ଯେ ତାର ଗୋଟିଏ କନ୍ୟା ଜାତ ହେବ । ସେ ସ୍ତ୍ରୀକୁ କିଛି ଧନ ଦେଇ ନିଜ ଘରେ ରଖିଲେ । କିଛିଦିନ ପରେ ତାର ଗୋଟିଏ କନ୍ୟା ଜନ୍ମିଲା । ବ୍ରାହ୍ମଣ ସ୍ତ୍ରୀ ଲୋକଟିକୁ କିଛି ଧନ ଦେଇ ବିଦାୟ କରିଦେଲେ ଓ ଶିଶୁ କନ୍ୟାଟିକୁ ରଖି ପାଳନ କଲେ । ସେ ନିଜେ ତାର ସମସ୍ତ ଯତ୍ନ ନେଉଥିଲେ ଓ ଶିଶୁଟି ସେହି ବ୍ରାହ୍ମଣଙ୍କ ଛଡ଼ା ଅନ୍ୟ କୌଣସି

ପୁରୁଷକୁ ଦେଖି ନ ଥିଲ । ଏହା ଫଳରେ ବ୍ରାହ୍ମଣ କନ୍ୟାଟି ଉପରେ ପୂର୍ଣ୍ଣ ଆଧିପତ୍ୟ ବିସ୍ତାର କଲେ । କେତେକ ବର୍ଷପାଏ ପୁରୋହିତ ରାଜାଙ୍କ ସହିତ ପଶାଖେଳ ବନ୍ଦ କରିଦେଲେ ।

କନ୍ୟାଟି ଯୌବନରେ ଉପନୀତ ହେବାରୁ ରାଜପୁରୋହିତ ପୁଣି ରାଜାଙ୍କୁ ପଶା ଖେଳିବାକୁ କହିବେ । ରାଜା ପଶାକାଠି ପକା-ଇବା ପୂର୍ବରୁ ପୂର୍ବପରି କହିଲେ—

ବିଧାତା ବିଧାନ ନୁହଇ ଆନ
ନଦୀ ଜଳ କରେ ନୀଚ ଗମନ;
ଘର ପରୁଷରେ ରତ୍ନେ ଯୁବତୀ
ଅଛି କେଉଁ ନାରୀ ନୋହି ଅସତୀ ?

ଏହା ଶୁଣି ରାଜପୁରୋହିତ କହିଲେ—

ଅଛି ସେ ଯୁବତୀ ମୋହର ପୁରେ
ଦେଖି ନାହିଁ ତାକୁ କେହି ନେତ୍ରରେ ।

ମାତ୍ର ରାଜା ଏଥର ଖେଳରେ ହାରିଗଲେ । ଏଣିକି ଯେତେ ଥର ଖେଳ ହେଲା; ରାଜା ତାଙ୍କର ଗୀତ ପଦଟି ବୋଲିଲେ, ପୁରୋହିତ ତାଙ୍କ ପଦଟି ବୋଲିଲେ । ରାଜା ପ୍ରତିଥର ହାରନ୍ତି, ପୁରୋହିତ ଜିଣନ୍ତି ।

ବୋଧିସତ୍ତ୍ୱ ସ୍ଥିର କଲେ ଯେ ପୁରୋହିତେ ତାଙ୍କ ଘରେ କୌଣସି ଯୁବତୀକୁ ବନ୍ଦ କରି ରଖିଛନ୍ତି ଓ ତାର ସତୀତ୍ୱ ଅକ୍ଷୁଣ୍ଣ ଥିବାରୁ ତାଙ୍କ କଥା ମିଥ୍ୟା ହେଉଛି ଓ ସେ ଖେଳରେ ହାରୁଛନ୍ତି । ଗୁପ୍ତଚରଙ୍କ ସାହାଯ୍ୟରେ ସେ ବୁଝିପାରିଲେ ଯେ, ତାଙ୍କର ଅନୁମାନ ସତ୍ୟ । ଯୁବତୀର ସତୀତ୍ୱ ନଷ୍ଟ କରିବା ପାଇଁ ସେ ଗୋଟିଏ ଦୁଷ୍ଟ ଲୋକର ସାହାଯ୍ୟ ନେଲେ । ସେହି ଯୁବତୀ ସହିତ ସେ

ସମ୍ବନ୍ଧ ସ୍ଥାପନ କରିବ ବୋଲି କହି ବୋଧିସତ୍ତ୍ୱଙ୍କ ଠାରୁ କିଛି ଅର୍ଥ ନେଲା ।

ଏହି ଧନରେ ଲୋକଟି ପୁରୋହିତଙ୍କ ଗୃହ ନିକଟରେ ଗୋଟିଏ ଦୋକାନ ଖୋଲିଲା । ଚନ୍ଦନ, କୁଙ୍କୁମ, ଗୋରୋଚନା ଓ ବିବିଧ ସୁବାସିତ ଅତର ସହିତ ନାନାପ୍ରକାର ଫୁଲ ତାର ଦୋକାନରେ ବିକ୍ରୟ ହେଉଥିଲା । ପୁରୋହିତଙ୍କ ଘରଟି ସାତମହଲାର ଓ ପ୍ରତି ମହଲାର ଦ୍ୱାର ନିକଟରେ ଜଣେ ଲେଖାଏଁ ସ୍ତ୍ରୀଲୋକ ଜଗି ରହି- ଥିଲେ । ପୁରୋହିତଙ୍କ ଛଡ଼ା ଅନ୍ୟ କୌଣସି ପୁରୁଷ ଏହି ଘରେ ପ୍ରବେଶ କରିବା ନିଷିଦ୍ଧ ଥିଲା । ଘରୁ ଅଳିଆ କାଢ଼ିବା ଠୋକେଇ ସୁଦ୍ଧା ପରୀକ୍ଷା କରି ଦେଖାଯାଉଥିଲା । କେବଳ ପୁରୋହିତ ସେହି କନ୍ୟାକୁ ଦେଖିପାରୁଥିଲେ । ତାର କାର୍ଯ୍ୟ କରିବା ପାଇଁ ଜଣେ ମାତ୍ର ଦାସୀ ଥିଲା । ଯୁବତୀଟି ଏହି ଦାସୀ ହାତରେ ବଜାରରୁ ସୁଗନ୍ଧ ତେଲ, ଫୁଲ ପ୍ରଭୃତି ବଜାରରୁ କିଣାଇ ଆଣୁଥିଲା । ଦାସୀ ଦେଖିଲା ଯେ ନିକଟରେ ଗୋଟିଏ ଦୋକାନ ଖୋଲିଛି ଓ ସେଥିରେ ଅନେକ ପ୍ରକାରର ଅତର ପ୍ରଭୃତି ବିକି ହେଉଅଛି । ଏଣେ ଠକ ଦୋକାନୀ ଭାବିଲା, ଏହି ଦାସୀଟିକୁ ହସ୍ତଗତ କଲେ ତାର ଉଦ୍ଦେଶ୍ୟ ସିଦ୍ଧ ହୋଇପାରିବ ।

ଦିନେ ସେହି ଦାସୀ ବଜାରକୁ ଯାଉଥିଲାବେଳେ ଠକ ଦୋକାନୀ ହଠାତ୍ ରାସ୍ତା ଉପରକୁ ଦଉଡ଼ି ଯାଇ ତାର ପାଦ ଦୁଇ- ଟିକୁ ଧରି କାନ୍ଦ କାନ୍ଦ ହୋଇ କହିଲା, "ମାଆ, ମାଆ, ଏତେ ଦିନ ହେଲା ତୁ କୁଆଡ଼େ ଥିଲୁ ?" ଠକର କେତେଜଣ ସଙ୍ଗୀ ପାଖରେ ଥିଲେ । ସେମାନେ କହି ଉଠିଲେ, "ଧନ୍ୟ ଏ ମାଆ ପୁଅ । ଦେଖ, ଠିକ୍ ଏକାପରି ଆଖି, ଏକାପରି ନାକ, ଏକାପରି ହାତ, ଏକାପରି ଗୋଡ଼ ।" ଜଣେ କେହି କହି ଉଠିଲା, "ଆରେ, ତୋ ଭାଗ୍ୟ ଖୁବ୍

ଭଲ । ତାହା ନୋହିଥିଲେ କି ଏତେଦିନ ପରେ ମାଆ ସାଥିରେ ଭେଟ ହୋଇଥାନ୍ତା ।" ଏହି ସବୁ କଥା ଶୁଣି ଦାସୀର ମୁଣ୍ଡ ଘୂରିଗଲା । ସେ ମନେକଲା ଯେ ଏହି ଯୁବକଟି ତାର ପୁଅ । ସେ କିଛି କହି ପାରିଲା ନାହିଁ । ଯୁବକ କହିଲା, "ମାଆ, ତୁ ଏବେ କେଉଁଠି ରହୁଛୁ ?"

ଲୋକଟିର ହାବଭାବ ଦେଖି ଦାସୀର ତା' ପ୍ରତି ସ୍ନେହ ଆସିଥିଲା । ସେ ତାକୁ ନିଜର ପୁଅ ବୋଲି ଧରି ନେଇଥିଲା । ସେ କହିଲା, "ଆରେ ପୁଅ, ମୁଁ ଏଇ ପାଖରେ ଅଛି । ପୁରୋହିତଙ୍କ କୋଠାରେ ରହୁଛି । ତାଙ୍କର ଯେଉଁ ସ୍ତ୍ରୀ ଅଛି, ତାଙ୍କର ହାଲଚାଲ ବୁଝିବା ମୋର କାମ । ବେଶ୍ ସୁଖରେ ଅଛି । ସ୍ତ୍ରୀଟି ଭାରି ସୁନ୍ଦରୀ । ଏବେ ତ ତା ପାଇଁ ଅତର, ବାସନା ତେଲ, ଫୁଲହାର କିଣିବାପାଇଁ ଯାଉଥିଲି ।"

ଏହା ଶୁଣି ଠକ କହିଲା, "ମାଆ, ତୁ ସେଠାରେ କାହିଁକି ରହୁଛୁ, ଏଠିକି ଆ । ମାଆ ପୁଅ ଏକାଠି ରହିବା । ଆଜି ଏଥର ଅନ୍ୟଠାରୁ କିଣିବା କି ଦରକାର, ମୋ ଦୋକାନରୁ ନେଇଯିବୁ ।"

ଦାସୀ କହିଲା, "ମୁଁ ତ ଏଇ ପାଖରେ ଅଛି । ଯେତେବେଳେ ଇଚ୍ଛା ସେତେବେଳେ ତୋ ପାଖକୁ ଆସିବି ।"

ଠକ କେତେଗୁଡ଼ିଏ ଫୁଲହାର, ଅତର, ବାସନା ତେଲ ଆଣି ଦେଲା । ଦାସୀ ପଇସା ଦେବାକୁ ବାହାରିବାରୁ ସେ କହିଲା, "ମାଆ ! ତୁ ଏପରି କଥା କହିବୁ ନାହିଁ । ମୋର କଅଣ କମ୍ ଲାଭ ହେଉଛି ! ତୁ ନେଇଯାଆ । ଯେତେବେଳେ ଯାହା ଦରକାର ହେଉଥିବ, ନେଇ ଯାଉଥିବୁ ।"

ସେଦିନ ଦାସୀ ଯେଉଁସବୁ ସୁବାସିତ ଦ୍ରବ୍ୟ ନେଇଥିଲା, ସେଥିରେ ଯୁବତୀ ଅତ୍ୟନ୍ତ ସନ୍ତୁଷ୍ଟ ହେଲା ଓ ବ୍ରାହ୍ମଣ ମଧ୍ୟ ତା ପ୍ରତି

ଅଧିକ ଆଦର ଦେଖାଇଲେ । ଏପରି ସୁନ୍ଦର ଓ ସୌରଭମୟ ଦ୍ରବ୍ୟ କେଉଁଠାରୁ ସେ ଆଣିଲା ବୋଲି ପଚାରିବାରୁ ଦାସୀ କହିଲା, "ଏଗୁଡ଼ିକ ମୋର ପୁଅଠାରୁ ଆଣିଛି ।"

ଯୁବତୀ କହିଲା, "ଏଣିକି ଅନ୍ୟ ଦୋକାନରୁ ପୁଷ୍ପ ଓ ଗନ୍ଧ-ଦ୍ରବ୍ୟ ନ କିଣି ପ୍ରତିଦିନ ତୁମ ପୁଅର ଦୋକାନରୁ ଆଣିବ ।"

ତେଣିକି ଦାସୀ ବ୍ରାହ୍ମଣଙ୍କଠାରୁ ପଇସା ନେଲା; କିନ୍ତୁ ଦିନା-ବ୍ୟୟରେ ଆବଶ୍ୟକ ଦ୍ରବ୍ୟ ପୁଅଠାରୁ ଆଣି ପଇସା ସଞ୍ଚି ରଖିଲା ।

କିଛିଦିନ ପରେ ଯୁବକ ପୀଡ଼ିତ ଥିବାର ଛଳନା କରି ଶୋଇ ରହିଲା । ଯଥାସମୟରେ ପୁଷ୍ପ ଓ ଗନ୍ଧମାଲ୍ୟ ପ୍ରଭୃତି ଆଣିବାକୁ ଯାଇ ଦାସୀ ଶୁଣିଲା, ଯୁବକ ପୀଡ଼ାଗ୍ରସ୍ତ । ସେ 'ପୁଅ' ପାଖକୁ ଯାଇ ତାର ପୀଡ଼ାର କାରଣ ପଚାରିଲା । କିନ୍ତୁ କିଛି ଉତ୍ତର ପାଇଲା ନାହିଁ । ବହୁ ଅନୁରୋଧ ପରେ ଯୁବକ କହିଲା, 'ମାଆ, ମୋର ପ୍ରାଣ ଗଲେ ସୁଦ୍ଧା ସେ କାରଣ କହିପାରିବି ନାହିଁ । କହିଲେ ମଧ କେହି ମୋର ପୀଡ଼ା ଦୂର କରିବାର ଆଶା ନାହିଁ ।

ଦାସୀ କହିଲା, "ମୁଁ ତୋର ମାଆ । ମାଆକୁ ନ କହିବୁ ତ ଆଉ କାହାକୁ କହିବୁ ? ପୀଡ଼ାର କାରଣ ଜାଣିଲେ ମୁଁ ନିଶ୍ଚୟ ତାହା ଦୂର କରିବାକୁ ଉଦ୍ୟମ କରିବି ।"

ଏହା ଶୁଣି ଯୁବକ କହିଲା, "ମାଆ, ମୁଁ ଶୁଣିଲି ଯେ ତୁ ଯେଉଁ ଯୁବତୀ ପାଖେ ରହିଛୁ ତାଭଳି ସୁନ୍ଦରୀ ଜଗତରେ ନାହିଁ । ଏହା ଜାଣିଲା ବେଳୁ ମୁଁ ତାରି କଥା ଭାବି ଭାବି ଏପରି ହୋଇଛି । ତାହା ସଙ୍ଗେ ମିଳନ ହେଲେ ମୋର ଜୀବନ ରହିବ । ନୋହିଲେ ମୋର ମରଣରେ ସନ୍ଦେହ ନାହିଁ ।"

ଦାସୀ ଯୁବକକୁ ସାନ୍ତ୍ୱନା ଦେଇ କହିଲା, "ସେଥିପାଇଁ ଚିନ୍ତାର ବିଶେଷ କାରଣ ନାହିଁ । ତୁମ ଦୁହିଁଙ୍କର ଯେପରି ଭେଟ ହୁଏ, ତାର ବ୍ୟବସ୍ଥା ମୁଁ କରିଦେବି ।"

ସେଦିନ ଦାସୀ ଯୁବତୀକୁ କହିଲା, "ତୁମକୁ ମୋର ଗୋଟିଏ କଥା କହିବାର ଅଛି । ମୁଁ ଯେଉଁ ଯୁଅଠାରୁ ଫୁଲ ଅତର ପ୍ରଭୃତି ଆଣେ, ସେ ତୁମର ଅପୂର୍ବ ସୌନ୍ଦର୍ଯ୍ୟ କଥା ମୋଠାରୁ ଶୁଣି ତୁମ ସଙ୍ଗେ ଦେଖାକରିବାକୁ ଅଧୀର ହୋଇ ପଡ଼ିଛି । ଏବେ ମୁଁ କଅଣ କରିବି ?"

ଯୁବତୀ କହିଲା, "ମୁଁ ମଧ୍ୟ ତାଙ୍କ ସହିତ ଦେଖା କରିବାକୁ ଇଚ୍ଛା କରୁଛି । ତୁମେ ଜାଣ, ବ୍ରାହ୍ମଣ ମୋତେ ବାହାରକୁ ଛାଡ଼ି ଦେବନାହିଁ । ତେଣୁ ତୁମେ ତାଙ୍କୁ କୌଣସିମତେ ଏଠାକୁ ନେଇ ଆସ ।"

ଘରେ ଘରେ କଡ଼ା ପହରା । ପ୍ରତି ଦ୍ୱାରରେ ଜଣେ ଲେଖାଏଁ ସ୍ତ୍ରୀ ଜଗୁଆଳ ରହିଥାନ୍ତି । କୌଣସି ଜିନିଷ ଘରୁ ବାହାରକୁ ନେଲେ, ବାହାରରୁ ଭିତରକୁ ଆସିଲେ ସେମାନେ ପରୀକ୍ଷା କରି ଦେଖନ୍ତି ।

ଦାସୀ ଗୋଟାଏ କୌଶଳ କଲା । ସେ ସବୁ ଘର ସଫା କରି ଅଳଆପାକ ଗୋଟିଏ ବଡ଼ ଟୋକେଇରେ ପୂରାଇ ବାହାରକୁ ନେବାକୁ ବସିଲା । ଜଗୁଆଳ ସ୍ତ୍ରୀଲୋକ ଟୋକେଇରେ କଅଣ ଅଛି, ଦେଖିବାକୁ ଚାହିଁବାରୁ ସେ ଅଳଆପାକ ତା ମୁଣ୍ଡ ଉପରେ ଅଜାଡ଼ି ଦେଲା । କିଛି ଦିନ ଯାଏ ସେ ସବୁ ଜଗୁଆଳଙ୍କ ପ୍ରତି ଏହିପରି ବ୍ୟବହାର ଦେଖାଇବାରୁ ସେମାନେ ଆଉ ତା ଟୋକେଇ ପରୀକ୍ଷା କରିବାକୁ ଗଲେନାହିଁ । ଦିନେ ଏହି ସୁବିଧାରେ ସେ ଯୁବକକୁ ଗୋଟିଏ ଟୋକେଇରେ ପୂରାଇ ଯୁବତୀର ରହିବା କୋଠରୀରେ ପହଞ୍ଚାଇ ଦେଲା ।

ଉପର ମହଲରେ ଯୁବତୀର କୋଠରୀରେ ରହି ଯୁବକ ତା ସହିତ କେତୋଟି ଦିନ ଆନନ୍ଦରେ କଟାଇଲା । ବ୍ରାହ୍ମଣ ପୂର୍ବୋକ୍ତ ଯୁବତୀ ସହିତ ଥିଲାବେଳେ ଯୁବକ ଗୋଟିଏ ନିଭୃତ ସ୍ଥାନରେ ଲୁଚି ରହୁଥିଲା । କିଛିଦିନ ପରେ ଯୁବକ ଯୁବତୀ ବିଚାର କଲେ—ଯୁବକ ଆଉ ବେଶିଦିନ ସେଠାରେ ରହିବା ନିରାପଦ ନୁହେଁ । କିନ୍ତୁ ଏଥି-ପୂର୍ବରୁ ବ୍ରାହ୍ମଣଙ୍କୁ କିଛି ଶିକ୍ଷା ଦେବା ଉଚିତ ।

ଦିନେ ଯୁବତୀ ବ୍ରାହ୍ମଣଙ୍କୁ ବିଶେଷ ଆଦର ଦେଖାଇ କହିଲା, "ପ୍ରିୟ, ଆଜ ନାଚିବା ପାଇଁ ମୋର ବିଶେଷ ଇଚ୍ଛା ହେଉଛି । କିନ୍ତୁ ତୁମେ ବଂଶୀ ବଜାଇବ । ବଂଶୀର ତାଳେ ତାଳେ ମୁଁ ନାଚିବ ।" ବ୍ରାହ୍ମଣ କହିଲେ, "ଏ ତ ଅତି ଆନନ୍ଦର ବିଷୟ । ମୁଁ ବଂଶୀ ବଜାଇବି ଓ ତୁମେ ନାଚିବ ।" ଯୁବତୀ କହିଲା, "ସେ କଥା ସତ । କିନ୍ତୁ ତୁମେ ଚାହିଁ ରହିଥିଲେ ମୋର ଲଜ୍ଜା ଆସିବ । ମୁଁ ନାଚି ପାରିବି ନାହିଁ । ଗୋଟିଏ କଥା କରାଯାଉ । ମୁଁ ତୁମ ମୁହଁରେ ଗୋଟିଏ ଲୁଗା ବାନ୍ଧିଦେବି । ଆଖି ବନ୍ଦ ଥିଲେ ତୁମେ ମୋତେ ଦେଖି ପାରିବ ନାହିଁ । ମୁଁ ସ୍ୱଚ୍ଛନ୍ଦରେ ନାଚିବି ।"

ତାହା ହିଁ କରାଗଲା । ବ୍ରାହ୍ମଣଙ୍କ ମୁହଁରେ ଗୋଟିଏ ଲୁଗା ବନ୍ଧା ହେଲା । ସେ ବଂଶୀ ଧରି ବଜାଇଲେ ଓ ଯୁବତୀ ନାଚିଲା । କିଛି ସମୟ ପରେ ଯୁବତୀ କହିଲା, "ପ୍ରିୟ, ତୁମ ମୁଣ୍ଡରେ ଗୋଟିଏ ବିଧା ମାରି-ବାକୁ ମୋର ମନ ହେଉଅଛି ।" ବ୍ରାହ୍ମଣ ସେହି ଯୁବତୀର ଏପରି ବଶ ହୋଇ ଯାଇଥିଲେ ଯେ ଏଥିରେ ସ୍ୱୀକୃତ ହୋଇ କହିଲେ, "ତୁମର କୋମଳ ହାତରେ ଗୋଟାଏ କଅଣ, ପାଞ୍ଚଟା ବିଧାରେ ସୁଦ୍ଧା ମୋର କିଛି କ୍ଷତି ନାହିଁ ।" ଯୁବତୀ ଉକ୍ତ ଯୁବକକୁ ଠାରି ଦେବାରୁ ସେ ବ୍ରାହ୍ମଣଙ୍କ ମୁଣ୍ଡରେ ପ୍ରଚଣ୍ଡ ମୁଷ୍ଟ୍ୟାଘାତ କଲା ଓ ସଙ୍ଗେ ସଙ୍ଗେ ଲୁଚିଗଲା । ଏହି ଆଘାତରେ ବ୍ରାହ୍ମଣର ମୁଣ୍ଡ ଘୂରିଗଲା ।

ଆଖିର ତୋଳା ବାହାର ପଡ଼ିଲା ପରି ଲାଗିଲା । ସେ ଆକୁଳରେ କହିଲେ, "ପ୍ରିୟେ, ମୁଁ ଜାଣି ନଥିଲି ଯେ ତୁମର ସେ କୋମଳ ହାତରେ ଏତେ ଶକ୍ତି ଅଛି ।"

ଯୁବତୀ ବ୍ରାହ୍ମଣଙ୍କ ମୁଖରୁ ବସ୍ତ୍ର ଖୋଲିଦେଲା; ତାଙ୍କ ମୁଣ୍ଡରେ ତେଲ ଘଷିଦେଲା । ବ୍ରାହ୍ମଣ କିଛି ସନ୍ଦେହ ନକରି ଘରୁ ବାହାରି ଗଲେ । ଏଣେ ଦାସୀ ଯୁବକକୁ ପୁଣି ଟୋକେଇରେ ପୂରାଇ ବାହାରେ ଛାଡ଼ିଦେଇ ଆସିଲା । ଯୁବକ ରାଜାଙ୍କ ପାଖକୁ ଯାଇ ସମସ୍ତ ସମ୍ବାଦ ଦେଲା ।

ସେଦିନ ପୁରୋହିତ ରାଜାଙ୍କ ପାଖକୁ ଯିବାରୁ ରାଜା କହିଲେ, "ଅନେକ ଦିନ ହେଲା ପଶାଖେଳ ବନ୍ଦ ଅଛି । ଆସ ଆଜି ଖେଳିବା ।" ବ୍ରାହ୍ମଣ ଏହି ପ୍ରସ୍ତାବରେ ସ୍ୱୀକୃତ ହୋଇ ଖେଳିବାକୁ ବସିଲେ । ରାଜା ପଶାକାଠି ଗଡ଼ାଇଲା ବେଳକୁ କହିଲେ—

ସ୍ୱଧାତ'ସ୍ୱଧୀନ ନୁହଇ ଆନ
ନଦୀ ଜଳ କରେ ମତେ ଗମନ,
ପରପୁରୁଷରେ ରସେ ଯୁବତୀ
ଅଛି କେଉଁ ନାରୀ ନୋହିବ ଅସତୀ ?

ଏହା ପରେ ପରେ ପୁରୋହିତେ ଆରମ୍ଭିଲେ କହିଲେ—

ଅଛି ଯେ ଯୁବତୀ ମୋହର ପୁରେ
ଦେଖିନାହିଁ କେହି ତାକୁ ନେତ୍ରରେ ।

ଏଥର ପୁରୋହିତଙ୍କ ଇଚ୍ଛା ଅନୁସାରେ ଦାନ ନ ପଡ଼ିବାରୁ ସେ ଅତ୍ୟନ୍ତ ଆଶ୍ଚର୍ଯ୍ୟାନ୍ୱିତ ହେଲେ । ରାଜା ତାଙ୍କର ଅବସ୍ଥା ଦେଖି କହିଲେ, "ଜଗତରେ ସବୁ ନାରୀ ସମାନ । ତୁମର ସ୍ତ୍ରୀଟି ସେଥିରୁ ଅଲଗା ନୁହେଁ । ତୁମେ ମନେ କରିଥିଲ, ଝିଅଟିକୁ ଜନ୍ମଦିନରୁ ପାଳି ପାଳପ୍ରହରୀ ଜଗୁଆଳି ଭିତରେ ରଖିଲେ ତୁମେ ତାର ଚରିତ୍ର

ଉଦ୍ଦିଷ୍ଟରେ ନିଃସନ୍ଦେହ ରହି ପାରିବ । କିନ୍ତୁ ଯୁବତୀକୁ ଯେତେ ଜଗି ରଖିଲେ ମଧ୍ୟ ସେ ଜଣେ ପୁରୁଷଠାରେ ସନ୍ତୋଷ ଲାଭ କରିପାରେ ନାହିଁ । ତୁମ ସ୍ତ୍ରୀ ତୁମ ଆଖିରେ ଅନ୍ଧପଟ୍ଟୁଳ ବାନ୍ଧି ନାଚିବା ବାହା-ନାରେ ପରପୁରୁଷ ଦ୍ୱାରା ତୁମ ମୁଣ୍ଡରେ ବଧା ମରାଇଲା ଓ ସେହି ଅବସରରେ ଉପପତିକୁ ବାହାରକୁ ପଠାଇ ଦେଲା ।”

ବ୍ରାହ୍ମଣ ଦୁଃଖରେ ଘରକୁ ଫେରିଯାଇ ସ୍ତ୍ରୀର ଆଚରଣ ନିମନ୍ତେ ତାକୁ ଭର୍ତ୍ସନା କଲେ । କିନ୍ତୁ ସେ ସବୁ କଥା ଅସ୍ୱୀକାର କରି କହିଲା, “ତୁମେ କାହାଠାରୁ ଏ ମିଥ୍ୟା କଥା ଶୁଣିଥିବ । ମୁଁ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ । ମୋ ଛଡ଼ା ଅନ୍ୟ କେହି ତୁମ ମୁଣ୍ଡରେ ବଧା ମାରିନାହିଁ । ଯେବେ ମୋ କଥାରେ ତୁମର ବିଶ୍ୱାସ ନ ଥାଏ, ତେବେ ମୁଁ ଅଗ୍ନିରେ ପ୍ରବେଶ କରି ମୋ କଥାର ସତ୍ୟତା ପ୍ରମାଣ କରାଇ ଦେବି ।”

ବ୍ରାହ୍ମଣ ଅଗ୍ନି ପରୀକ୍ଷା କରାଇବାକୁ ସ୍ଥିର କଲେ ।

ଏଣେ ସେ ଯୁବତୀ ତାର ଦାସୀକୁ କହିଲା, “ମୁଁ ଅଗ୍ନିରେ ପ୍ରବେଶ କରି ମୋର ସତୀତ୍ୱର ପ୍ରମାଣ ଦେବି ବୋଲି କହିଛି । ତୁମେ ମୋ ପାଇଁ ଗୋଟିଏ କାମ କରିବ । ତୁମ ପୁଅକୁ କହିବ ସେ ଆସି ଅଗ୍ନିକୁଣ୍ଡ ପାଖରେ ରହିଥିବ । ମୁଁ ଅଗ୍ନିରେ ପ୍ରବେଶ କରିବାକୁ ଗଲାବେଳକୁ ସେ ମୋର ହାତ ଧରି ଟାଣି ଆଣିବ ।” ଦାସୀ ପୁଅ ପାଖକୁ ଯାଇ ସେହିପରି ପରାମର୍ଶ ଦେଲା ।

ଅଗ୍ନିକୁଣ୍ଡ ପ୍ରସ୍ତୁତ ହେଲା । ଶତ ଶତ ଲୋକ ଏହି ଦୃଶ୍ୟ ଦେଖିବାକୁ ରୁଣ୍ଡ ହେଲେ । ଯୁବକ ମଧ୍ୟ ସେମାନଙ୍କ ଭିତରେ ଛିଡ଼ା ହୋଇ ରହିଲା ।

ଅଗ୍ନିଶିଖା ପ୍ରଜ୍ୱଳିତ ହୋଇ ଉଠିବାରୁ ଯୁବତୀ କହିଲା, “ମୋର ପତିଙ୍କ ବ୍ୟତୀତ ଅନ୍ୟ ପୁରୁଷ ହସ୍ତ ଯଦି ମୋତେ ସ୍ପର୍ଶ

କରିଥାଏ; ତେବେ ହେ ଅଗ୍ନି ଦେବତା, ମୋତେ ଭସ୍ମ କରିଦିଅ । ଯଦି ମୁଁ ସତୀ ହୋଇଥାଏ, ଯଦି ପରପୁରୁଷର ହସ୍ତ ମୋତେ ସ୍ପର୍ଶ କରି ନଥାଏ, ତେବେ ମୁଁ ଏହି ଅଗ୍ନିପରୀକ୍ଷାରୁ ଉତ୍ତୀର୍ଣ୍ଣ ହୋଇ ଆସିବି ।" ଏହା କହି ସେ ଅଗ୍ନିକୁଣ୍ଡ ଆଡ଼କୁ ଅଗ୍ରସର ହେଲା ବେଳକୁ ସେହି ଯୁବକ ସମବେତ ଦର୍ଶକମାନଙ୍କ ମଧ୍ୟରୁ ଦଉଡ଼ି ଯାଇ ତାର ହାତକୁ ଧରି ଟାଣି କହିଲା, "ଗୋଟାଏ ନିର୍ଲଜ୍ଜ ବ୍ରାହ୍ମଣ କଥାରେ ତୁମେ ଅଗ୍ନିରେ ଝାସ ଦେବାକୁ ଯାଉଛ ? କିଏ ଏପରି ସୁନ୍ଦରୀ ଯୁବତୀ ପତ୍ନୀକୁ ଅଗ୍ନିରେ ପଶିବାକୁ କହିବ ? ବ୍ରାହ୍ମଣର ମସ୍ତିଷ୍କ ବିକୃତ ଘଟିଛି ।"

ଯୁବତୀ କହିଲା, "ମୋର ପ୍ରତିଜ୍ଞା ପଣ୍ଡ ହୋଇଗଲା । ଏବେ ମୋ ପକ୍ଷରେ ଅଗ୍ନିରେ ପ୍ରବେଶ କରିବା ଅସମ୍ଭବ ।" ବ୍ରାହ୍ମଣ ପଚାରିଲେ, "କାହିଁକି ?"

ଯୁବତୀ କହିଲା, "ଯେତେବେଳ ଯାଏ ମୋତେ ଅନ୍ୟ ପୁରୁଷର ହସ୍ତ ସ୍ପର୍ଶ କରି ନ ଥିଲା, ସେତେବେଳ ପର୍ଯ୍ୟନ୍ତ ଅଗ୍ନି ମୋର କିଛି କ୍ଷତି କରି ନ ଥାନ୍ତା । ମୁଁ ଅଗ୍ନି ମଧ୍ୟରୁ ଶୁଦ୍ଧ ସୁବର୍ଣ୍ଣ ପରି ବାହାରି ଆସିଥାନ୍ତି, ସମସ୍ତେ ମୋ ସତୀତ୍ୱର ପରିଚୟ ସ୍ୱଚକ୍ଷୁରେ ଦେଖିଥାନ୍ତେ । କିନ୍ତୁ କାହୁଁ ଜଣେ ଯୁବକ ମୋର ହସ୍ତ ଧରି ସବୁ ପଣ୍ଡ କରିଦେଲା ।"

ପୁରୋହିତେ ଏବେ ଯୁବତୀର କୌଶଳ ବୁଝି ପାରିଲେ । ଲୋକେ ଯୁବତୀର ସତୀତ୍ୱ ବିଷୟରେ ଯେତେ ପ୍ରଶଂସା କଲେ ହେଁ ବ୍ରାହ୍ମଣ ତାହା ବିଶ୍ୱାସ କଲେ ନାହିଁ । ସେ ଯୁବତୀକୁ ଗୃହରୁ ବିତାଡ଼ିତ କରିଦେଲେ ।

ନାରୀମାନଙ୍କର ଚରିତ୍ର ଅଦ୍ଭୁତ । ନିଜର ପତିକୁ ପ୍ରତାରିତ କରିବା ପାଇଁ ସେମାନେ ଯେକୌଣସି ପାପ କରି ପାରନ୍ତି; ସତ୍ୟକୁ

ମିଥ୍ୟା ଓ ମିଥ୍ୟାକୁ ସତ୍ୟ ବୋଲି ପ୍ରତିପନ୍ନ କରାଇବା ସେମାନଙ୍କ ପକ୍ଷରେ ଅକଷ୍ଟକର ବ୍ୟାପାର । ✳✳✳

## ତକ୍କଲ ଜାତକ

କାଶୀ ରାଜ୍ୟର ଗୋଟିଏ ଗ୍ରାମରେ ଜଣେ ଲୋକର ବଶିଷ୍ଠକ ନାମରେ ଏକମାତ୍ର ପୁତ୍ର ଥିଲା । ବଶିଷ୍ଠକ ତାହାର ପିତାମାତାଙ୍କୁ ପୋଷଣ କରୁଥିଲା । କିଛିକାଳ ପରେ ମାତାର ମୃତ୍ୟୁ ହେଲା ଓ ସେ ବିବାହ କଲା । ସେ ଏବେ ବୃଦ୍ଧ ପିତା ଓ ପତ୍ନୀକୁ ପୋଷଣ କଲା । ତାର ଗୋଟିଏ ପୁଅ ଜନ୍ମ ହେଲା; କିନ୍ତୁ ପୂର୍ବପରି ତାହାର ଘରେ ଶାନ୍ତି ରହିଲା ନାହିଁ । ପ୍ରତିଦିନ ସ୍ତ୍ରୀ ତାକୁ କହିବାକୁ ଲାଗିଲା, "ତୁମର ଏ ବୁଢ଼ାବାପ ଯୋଗୁ ମୁଁ ଏ ଘରେ ରହିପାରିବି ନାହିଁ । ମୁଁ ତାର ଯେତେ ସେବା କଲେ ହେଁ ସେ ସବୁବେଳେ ଅସନ୍ତୁଷ୍ଟ । ଉଠି ବସିବାକୁ ତାର ବଳ ନାହିଁ । ମୁଁ ଯାହା କିଛି କଲେ ସେଥିରେ ସେ ଦୋଷ ବାହାର କରୁଛି । ଏତେ ଦିନ ହେଲା ରୋଗରେ ସଢ଼ୁଛି ।"

ବଶିଷ୍ଠକ କହିଲା, "ବୁଢ଼ା ଲୋକ, ରୋଗରେ ପଡ଼ି ପଡ଼ି ଚିଡ଼ା ହୋଇଥିବ । କଅଣ କରିବା ? ବୁଢ଼ାକୁ କୌଣସିମତେ ଚଳାଇ ନିଅ ।"

ସ୍ତ୍ରୀ କହିଲା, "ମୋ କଥା ମାନିବ ତ ମୁଁ ଉପାୟ କହିବି ।"

ସ୍ତ୍ରୀ ପରାମର୍ଶ ଅନୁସାରେ କାର୍ଯ୍ୟ କରିବ ବୋଲି ବଶିଷ୍ଠକ ସ୍ୱୀକୃତ ହେଲା ।"

ତହୁଁ ସ୍ତ୍ରୀ କହିଲା, "ଦେଖୁଛ, ବୁଢ଼ା ଅଳ୍ପଦିନେ ମରିବ । କେଇଟା ଦିନ ପରେ ଯେ ଆପେ ମରିବ, ସେ ଆଜି କି କାଲି ମଲେ କ୍ଷତି କଅଣ ? ତୁମେ ଗୋଟିଏ କଥା କର । ବୁଢ଼ାକୁ ତୁମେ ମଶାଣିକି ନେଇଯାଅ । ସେଠାରେ ଗୋଟିଏ ଗାତ ଖୋଳି ସେଥିରେ ପୋତି ଦେଇ ଆସ । ତାହା ହେଲେ ମୁଁ ଟିକିଏ ଶାନ୍ତିରେ ଘରର କାମ ଧନ୍ଦା କରିବି ।"

ଏହା ଶୁଣି ସ୍ୱାମୀ କହିଲା, "ଏ କି କଥା କହୁଛ ? ଜିଅନ୍ତା ମଣିଷଟାକୁ ଗାତରେ ପୋତି ମାରିଦେବା କଅଣ ସହଜ କଥା ? କେହି ଜାଣିଲେ ମୋ ଅବସ୍ଥା କଅଣ ହେବ ?"

କିନ୍ତୁ ସ୍ତ୍ରୀ ଏଥିରେ ଦବି ନଯାଇ କହିଲା, "ତୁମର କଅଣ ଟିକିଏ ବୁଦ୍ଧି ନାହିଁ ? କଅଣ ବାପକୁ ଜିଅନ୍ତା ପୋତୁଛ ବୋଲି ଗାଁ ଯାକର ଲୋକଙ୍କୁ କହିବ ? ତୁମେ କାଲି ସକାଳୁ ଖୁବ୍ ବଡ଼ ପାଟିରେ ବୁଢ଼ାକୁ କହିବ—ଅମୁକ ଗାଆଁର ଅମୁକ ଲୋକଠାରୁ ଆମର ଅନେକ ଟଙ୍କା ପାଉଣା ଅଛି । ମୁଁ ମାଗିଲାରୁ ସେ ତୁମ ଛଡ଼ା ଆଉ କାହାକୁ ଦେବ ନାହିଁ ବୋଲି କହିଲା । ଚାଲ; ଆମେ ଦୁହେଁ-ଯାକ ଶଗଡ଼ରେ ବସି ତା ଘରକୁ ଯାଇ ଟଙ୍କା ଆଣିବା । ନୋହିଲେ ଟଙ୍କାତକ ବୁଡ଼ିଯିବ । ସମସ୍ତେ ଶୁଣିବେ ଯେ ବୁଢ଼ା ତୁମ ସାଥିରେ ଟଙ୍କା ପାଇଁ ଗାଡ଼ିରେ ବସି ଯାଇଛି । ତୁମେ ଗାଡ଼ିରେ ଗୋଟାଏ କୋଦାଳ ନେଇଥିବ । ମଶାଣିରେ ଗାଡ଼ିକୁ ରଖି ଗାତ ଖୋଳି ବୁଢ଼ାକୁ ପୋତି ଦେଇ ଆସିବ । ଆସିଲାବେଳେ ଖୁବ୍ କାନ୍ଦି ବୋବେଇ ସମସ୍ତଙ୍କୁ କହିବ—ଆମେ ବାପପୁଅ ଟଙ୍କା ଧରି ଆସୁ-ଥିଲୁ । ଡକାଏତମାନେ ଆମକୁ ମାରି ସବୁ ଛଡ଼ାଇ ନେଲେ । ସେଇ ମାଡ଼ରେ ବାପ ମରିଗଲେ ।"

ବଣିଷ୍ଠକ ତାହା ହିଁ କରିବ ବୋଲି ସିଦ୍ଧାନ୍ତ କଲା । ସ୍ୱାମୀ ସ୍ତ୍ରୀଙ୍କ ଭିତରେ ଏହି ସବୁ କଥାବାର୍ତ୍ତା ହେଉଥିଲା ବେଳେ ତାଙ୍କ ପୁଅଟି ସବୁ ଶୁଣୁଥିଲା । ସାତବର୍ଷର ପିଲାଟିଏ ହେଲେ ସୁଦ୍ଧା ତାର ବୁଦ୍ଧି ଊଣା ନୁହେଁ । ସେ ଭାବିଲା, "ମାଆ ଏଡ଼େ ଖରାପ ଯେ ଆପଣା ବାପକୁ ପୋତି ମାରିବା ପାଇଁ ସ୍ୱାମୀକୁ ଶିକ୍ଷା ଦେଉଛି । ବାପା ମଧ୍ୟ ସେଥିରେ ରାଜି ହୋଇଗଲା । ଏଡ଼େ ପାପକାର୍ଯ୍ୟ କରିବାକୁ ତା ମନରେ ଭୟ ହେଲା ନାହିଁ । ଯାହା ହେଉ, ମୁଁ ମୋ ବୁଢ଼ାବାପାଙ୍କ ଜୀବନ ରଖିବି ଓ ବାପାଙ୍କୁ ଏ ପାପକାମରୁ ବନ୍ଦ କରିବି ।"

ସକାଳେ ବଣିଷ୍ଠକ ଗାଡ଼ି ସଜାଇ କରି ବାପାକୁ ଟଙ୍କା ଆଣିବା ପାଇଁ ସେଥିରେ ଯିବାକୁ ଡାକିଲା । ପୁଅଟି ଆଗ ଦଉଡ଼ି ଆସି ଗାଡ଼ିରେ ବସିଗଲା । ବାପା ଯେତେ ମନାକଲେ ସୁଦ୍ଧା ଘରେ ରହିଲା ନାହିଁ । ଶେଷରେ ବଣିଷ୍ଠକ ବାଧ୍ୟ ହୋଇ ନିଜର ବାପ ଓ ପୁଅକୁ ଗାଡ଼ିରେ ବସାଇ ଶ୍ମଶାନକୁ ଗଲା । ଗୋଟିଏ ଜାଗାରେ ପୁଅ ଓ ବାପଙ୍କୁ ବସାଇ ଦେଇ ବଣିଷ୍ଠକ କୋଦାଳ ଧରି ଚାଲିଗଲା । ସେ ଦୁହିଁଙ୍କଠାରୁ କିଛି ଦୂରରେ ଗୋଟିଏ ଗାତ ଖୋଳିବାକୁ ଲାଗିଲା । ଅଳ୍ପ ସମୟ ପରେ ପୁଅ ଯାଇ ବାପ ପାଖରେ ପହଞ୍ଚିଲା । କିଛି ନ ଜାଣିଲା ପରି ସେ ବାପକୁ ପଚାରିଲା, "ବାପା, ଏଠି ଗାତଟାଏ ଖୋଳୁଛ କାହିଁକି ? କଅଣ ଗଛ ଲଗେଇବ ? ଏଇଟା ଟାଙ୍ଗର ଭୂଇଁ । ପାଖରେ ପାଣି ନାହିଁ । ଗଛ ଲଗେଇଲେ କଅଣ ବଞ୍ଚିବ ?"

ବଣିଷ୍ଠକ କହିଲା, "ଆରେ, ଏଠି ଗଛ ଲଗାଯିବ ନାହିଁ । ତୋ ବୁଢ଼ାବାପ ଭାରି ଦୁର୍ବଳ ହୋଇଗଲାଣି, ଠିଆ ହେବାକୁ ସୁଦ୍ଧା ତାର ବଳ ନାହିଁ । ରୋଗରେ ପଡ଼ି ବଡ଼ କଷ୍ଟ ପାଉଛି । ଏ ଗାତରେ ବୁଢ଼ାକୁ ପୋତିଦେଲେ ସେ ଏ କଷ୍ଟରୁ ଉଦ୍ଧାର ପାଇଯିବ ।"

ପିଲାଟି କହିଲା, "ବାପା, ତୁମେ ତୁମର ବାପାଙ୍କୁ ଜୀଅନ୍ତା ପୋତି ମାରି ଦେବାକୁ ବସିଛ । ଏଇଟା ପାପ କାମ ।"

ଏହା କହି ସେ ଏହି ଗାତଠାରୁ କିଛି ଦୂରରେ ଆଉ ଗୋଟିଏ ଗାତ ଖୋଳିବାରେ ଲାଗିଲା । ବଶିଷ୍ଠକ ତାହା ଦେଖିପାରି ପୁଅକୁ ପଚାରିଲା; "ତୁ ଏଠାରେ ଗୋଟିଏ ଗାତ ଖୋଳୁଛୁ କାହିଁକି ।"

ପୁଅ ଉତ୍ତର କଲା, "ବାପା, ଆମ ଘରେ ବାପା ବୁଢ଼ା ହୋଇଗଲେ ତାଙ୍କୁ ପୋତି ମାରିପକାନ୍ତି ବୋଲି ମୁଁ ତୁମଠାରୁ ଶିଖିଲି । ତୁମ ବାପା ବୁଢ଼ା ହୋଇଯିବାରୁ ତାଙ୍କୁ ପୋତିବା ପାଇଁ ଗାତ ଖୋଳୁଛ । ତୁମେ ଯେତେବେଳେ ବୁଢ଼ା ହୋଇଯିବ, ମୁଁ ତୁମକୁ ଏହିପରି ଗାତରେ ପୋତି ମାରିବି । ତୁମକୁ ପୋତିବା ପାଇଁ ମୁଁ ଏ ଗାତକୁ ଖୋଳୁଛି ।

ଏହା ଶୁଣି ବଶିଷ୍ଠକ ଚକିତ ହୋଇଗଲା । ସେ କହିଲା, "ହଇରେ, ସାତ ବରଷର ପିଲାଟାଏ ହୋଇ ତୁ କଅଣ ନ କହିଲୁ ? ବାପକୁ କିଏ ଏପରି କହେ ? ତୋଠାରେ ଟିକିଏ ହେଲେ କଅଣ ଦୟାଧର୍ମ ନାହିଁ ?"

ପିଲାଟି କହିଲା, "ବାପା, ମୋ ଉପରେ ରାଗ କରୁଛ କାହିଁକି । ମୋଠାରେ ଯେ ଦୟାଧର୍ମ ନାହିଁ, ତାହା ନୁହେଁ । ମୁଁ ତୁମକୁ ଭକ୍ତି କରେଁ । କିନ୍ତୁ ତୁମେ ଆଜି ତୁମର ବାପ ପ୍ରତି ଯେଉଁ ବ୍ୟବହାର କରୁଛ, ତାହା ଦେଖି ଏପରି କହିଲି । ବାପାଙ୍କୁ ଥରେ ପୋତି ମାରି ଦେଲେ ଆଉ କେବେ ତାଙ୍କୁ ଫେରି ପାଇବ କି ? ବାପା, ଯେ ନିଜର ବାପା ବା ମାଆଙ୍କ ପ୍ରତି ନିର୍ଦ୍ଦୟ ବ୍ୟବହାର କରେ ସେ ଜନ୍ମେ ଜନ୍ମେ ନରକରେ ପଡ଼ି ଯନ୍ତ୍ରଣା ଭୋଗକରେ ବୋଲି ଶାସ୍ତ୍ରକାର-ମାନେ କହି ଯାଇଅଛନ୍ତି । ପୁଣି ଯେଉଁ ଲୋକ ବାପମାଆଙ୍କୁ ଯଥା-

ଶକ୍ତ ଖାଇବା ପିଇବାକୁ ଦେଇ ସେମାନଙ୍କର ସେବା ଶୁଶ୍ରୂଷା କରେ, ସେ କାଳେ କାଳେ ସ୍ୱର୍ଗରେ ସ୍ଥାନ ପାଏ ।"

ବଶିଷ୍ଠକ ପୁଅକୁ କୋଳରେ ବସାଇ କହିଲା, "ପୁଅ, ତୁ ମୋର ଆଖି ଖୋଲି ଦେଇଛୁ । ତୋ ମାଆର କଥାରେ ଅନ୍ଧ ହୋଇ ମୁଁ ଏ ପାପ କାର୍ଯ୍ୟ କରିବାକୁ ବସିଥିଲି । ଆଉ ଏପରି କାମ କରିବି ନାହିଁ ।"

ପୁଅ କହିଲା, "ବାପା, ସ୍ତ୍ରୀ ଲୋକ ମନ ସ୍ୱଭାବତଃ ଦୁର୍ବଳ । ସେମାନେ ସହଜେ ପାପକାମ କରି ପକାନ୍ତି । ତେଣୁ ସେଥିରୁ ସେମାନଙ୍କୁ ନିବର୍ତ୍ତାଇବା ଉଚିତ । ତୁମେ ଘରକୁ ଯାଇ ମାଆଙ୍କ ମନକୁ ବଦଳାଇ ଦିଅ । ସେ ଯେପରି ଏଭଳି ପାପ କଥାକୁ ମନରେ ସୁଦ୍ଧା ସ୍ଥାନ ନ ଦିଅନ୍ତି । ଚାଲ ବାପା, ସେ ମୋର ମାଆ ହେଲେ ମଧ୍ୟ ତାଙ୍କୁ ସଂଶୋଧନ କରିବା ଦରକାର, ନ ହେଲେ ଘରୁ ବାହାର କରିଦେବା ।"

ପୁଅଟିର ଉପଦେଶ ମାନି ବଶିଷ୍ଠକ ପୁଣି ନିଜର ବୃଦ୍ଧପିତା ଓ ପୁଅକୁ ଗାଡ଼ିରେ ବସାଇ ଘରକୁ ଫେରିଗଲା । ସେତେବେଳକୁ ତାର ସ୍ତ୍ରୀ ଘରଦ୍ୱାର ଲିପାପୋଛା କରି ମନ ଖୁସିରେ ଭଲ ରନ୍ଧାବଢ଼ା କରି ସ୍ୱାମୀ ଓ ପୁଅକୁ ଅପେକ୍ଷା କରି ବସିଥିଲା । ବୁଢ଼ାଟା ଘରୁ ଯାଇଛି ବୋଲି ତାର ମନରେ ଭାରି ଆନନ୍ଦ । ସ୍ୱାମୀ ଓ ପୁଅ ସହିତ ବୁଢ଼ା ଶ୍ୱଶୁର ଫେରିଥିବାର ଦେଖି ତାର ମନରେ ରାଗ ଜାତ ହେଲା । ବଶିଷ୍ଠକ ତାକୁ କିଛି ନ କହି ଗାଡ଼ିରୁ ବଳଦ ଫିଟାଇଲା । ବୁଢ଼ାକୁ ଧରି ଗାଡ଼ିରୁ ଓହ୍ଲାଇ ଦେଲା । ଏହି ସମୟରେ ତାର ସ୍ତ୍ରୀ କହିଲା, "ଏଇଟା କୌଣସି କାମର ନୁହେ । ପୁଣି ସେ ହତଭାଗାକୁ ନେଇ ଆସିଛ ।" ବଶିଷ୍ଠକ ଏତିକି ଶୁଣିଲା ମାତ୍ରେ "ତୁ କଣ କହିଲୁ ? ମୋର ବାପ ହତଭାଗା" କହି ପାଞ୍ଚଣ ଧରି ସ୍ତ୍ରୀକୁ ପିଟି

ଦେଇଗଲା ଓ ଘରୁ ବାହାରକୁ ଟାଣି ଟାଣି ନେଇ କହିଲା, "ଯାଆ, ଆଜିଠାରୁ ତୁ ମୋ ଦୁଆର ମାଡ଼ିବୁ ନାହିଁ ।"

ବୁଢ଼ା, ପୁଅ ଓ ନାତି ତିନହେଁ କିଛିଦିନ ସୁଖରେ ରହିଲେ । ବଶିଷ୍ଠକର ସ୍ତ୍ରୀ ସ୍ୱାମୀଠାରୁ ମାଡ଼ ଖାଇ ଜଣେ ବନ୍ଧୁ ଘରେ ରହିଲା । ଦିନେ ପୁଅ ବଶିଷ୍ଠକକୁ କହିଲା "ବାପା, ତୁମେ ମାଆକୁ ଗାଳି ଦେଲ; କିନ୍ତୁ ତାର କିଛି ପରିବର୍ତ୍ତନ ଆସିଥିବାର ଜଣାଯାଉନାହିଁ । ତୁମେ ଗୋଟିଏ କାମ କର । ପ୍ରଚାର କରିଦିଅ—ଅମୁକ ଗାଆଁରେ ଗୋଟିଏ ସୁନ୍ଦରୀ ଝିଅ ଅଛି । ଯାଉଛି ତାକୁ ଆଣି ବିବାହ କରିବି ସେ ମୋର, ମୋ ବୁଢ଼ାବାପାଙ୍କର ଓ ମୋ ପୁଅର ସବୁ କଥା ବୁଝିବ । ଶ୍ୱଶୁରଙ୍କ ସେବାରେ ମୋଟେ ହେଳା କରିବ ନାହିଁ ।"

ବଶିଷ୍ଠକ ଅନେକ ଲୋକଙ୍କ ଆଗରେ ଏହି କଥା କହିଲା । ଗାଆଁର ମାଇପେ ତାହା ପୁଣି ବଶିଷ୍ଠକର ସ୍ତ୍ରୀକୁ ତାହା କହିଲେ । ତହୁଁ ସେ ଭାବିଲା, "ସ୍ୱାମୀ ଆଉ ଗୋଟାକୁ ବିଭାହେଲେ ମୋର ସର୍ବନାଶ ହେବ । ମୁଁ କେବେହେଲେ ତାଙ୍କ ଘରକୁ ଯିବିନାହିଁ କି ସେ ମୋ ମୁହଁକୁ ଚାହିଁବେ ନାହିଁ । କଅଣ କରିବି ?"

ଏହିପରି ଚିନ୍ତା କରି କରି ସେ ସ୍ଥିର କଲା—ପୁଣି ସେହି ସ୍ୱାମୀଙ୍କର ପାଦତଳେ ପଡ଼ି କ୍ଷମା ମାଗିବ । କିନ୍ତୁ ସ୍ୱାମୀଙ୍କ ପାଖକୁ ଯିବାକୁ ତାର ସାହସ ପାଇଲା ନାହିଁ । ତେଣୁ ସେ ପୁଅ ପାଖକୁ ଯାଇ ତାକୁ ଖୋସାମତ କରି କହିଲା, "ତୁ ମୋତେ ରକ୍ଷା ନକଲେ ମୁଁ ମରିଯିବି । ତୋ ଗୁଣ ପକାଉଛି, ଆଜିଠାରୁ ତୋ ବାପା ଓ ଜେଜେବାପାଙ୍କର ସେବାରେ ଟିକିଏ ହେଲେ ହେଳା କରିବି ନାହିଁ । ସେ ମୋର ଦେବତା । ତାଙ୍କୁ ଦେବତା ପରି ମାନ୍ୟ କରିବି; ପୂଜା କରିବି ।"

ବାଳକଟି ମାଆର ଏହିି ପରିବର୍ତ୍ତନ ଦେଖି ବାପାଙ୍କୁ କହିଲା, "ଏବେ ମୋ ମାଆ ବଦଳି ଯାଇଛନ୍ତି । ତାଙ୍କୁ ଘରକୁ ଆଣ ।" ବଶିଷ୍ଠଙ୍କ ପୁଅର ଅନୁରୋଧରେ ସ୍ତ୍ରୀକୁ ଘରକୁ ଫେରାଇ ଆଣିଲେ । ସ୍ତ୍ରୀ, ସ୍ୱାମୀ, ଶ୍ୱଶୁରଙ୍କ ସେବାରେ ନିଯୁକ୍ତ ହେଲା ଓ ପୁଅର ଉପଦେଶ ମାନି ଚାଲିଲା ।

***

## ଚୁଲ୍ଲଧନୁଗ୍‌ଗହ ଜାତକ

ଏକ ସମୟରେ ବୋଧିସତ୍ତ୍ୱ ଶକ୍ରରୂପେ ଜନ୍ମଗ୍ରହଣ କରିଥିଲେ । ସେ ସମୟରେ ବ୍ରହ୍ମଦତ୍ତ ବାରାଣସୀରେ ରାଜତ୍ୱ କରୁଥିଲେ । ସେହି ବାରାଣସୀରେ ଜଣେ ବ୍ରାହ୍ମଣଙ୍କର ଗୋଟିଏ ପୁତ୍ର ଥିଲା । ବ୍ରାହ୍ମଣ ପୁତ୍ରଟିକୁ ଉଚ୍ଚଶିକ୍ଷା ନିମନ୍ତେ ପ୍ରସିଦ୍ଧ ତକ୍ଷଶିଳାକୁ ପଠାଇଦେଲେ । ସେଠାରେ ସେ ବିବିଧ ଶାସ୍ତ୍ରରେ ପାଣ୍ଡିତ୍ୟ ଅର୍ଜନ କରିବା ସଙ୍ଗେ ଜଣେ ଆଚାର୍ଯ୍ୟଙ୍କ ଠାରୁ ଧନୁର୍ବିଦ୍ୟା ଶିକ୍ଷାକଲେ ଏବଂ ଏହି ବିଦ୍ୟାରେ ସେ ଅସାଧାରଣ ପାରଦର୍ଶିତା ଲାଭ କଲେ । ଏପରି କି ଆଚାର୍ଯ୍ୟ ମହାଶୟ ଶିଷ୍ୟକୁ ନିଜର ସମକକ୍ଷ ମନେକଲେ । ତେଣୁ ସେ ନିଜର ଏକମାତ୍ର କନ୍ୟାକୁ ଏହି ଶିଷ୍ୟ ହସ୍ତରେ ସମର୍ପଣକଲେ । ବିବାହ ପରେ ନବଦମ୍ପତି ତକ୍ଷଶିଳାରୁ ବାରାଣସୀ ଅଭିମୁଖରେ ଅଗ୍ରସର ହେଲେ । କିଛିଦୂର ଯିବାପରେ ସେମାନେ ଏକ ବନର ସମୀପବର୍ତ୍ତୀ ହେଲେ । ଗ୍ରାମସ୍ଥ ଲୋକେ ସେମାନଙ୍କୁ ସେ ପଥରେ ଯିବାକୁ ବାରଣ କରି କହିଲେ, "ଗୋଟିଏ ମତ୍ତ ହସ୍ତୀର ଉପଦ୍ରବରେ ବହୁସଂଖ୍ୟକ ଲୋକ ପ୍ରାଣ ହରାଇଅଛନ୍ତି । ତେଣୁ ସେ ପଥରେ ଯିବା ଜୀବନପ୍ରତି ବିପଜ୍ଜନକ ।"

କିନ୍ତୁ ବ୍ରାହ୍ମଣ ଯୁବକଙ୍କର ନିଜର ଧନୁର୍ବିଦ୍ୟାରେ ପ୍ରଗାଢ଼ ବିଶ୍ୱାସ ଥିବାରୁ ସେ କାହାରି ବାରଣ ପ୍ରତି ଭ୍ରୂକ୍ଷେପ ନ କରି ସେହି ପଥରେ ଅଗ୍ରସର ହେଲେ । କିଛିଦୂର ଯିବାପରେ ହସ୍ତୀଟି ବନ ମଧ୍ୟରୁ ବାହାରି ପଡ଼ି ତାଙ୍କୁ ଆକ୍ରମଣ କରିବାକୁ ବସିଲା । ଯୁବକ ଗୋଟିଏ ମାତ୍ର ଶରଂ ମାରି ହସ୍ତୀଟିକୁ ବଧ କଲେ ।

ଯୁବକ ପତ୍ନୀ ସହିତ ବନର ମଧ୍ୟଭାଗରେ ଉପସ୍ଥିତ ହେଲେ । ଏଠାରେ ଗୋଟିଏ ଦସ୍ୟୁଦଳ ରହି ପଥିକମାନଙ୍କର ଧନ ଲୁଣ୍ଠନ କରି ସେମାନଙ୍କୁ ବିନାଶ କରୁଥିଲେ । ଏହି ଦଳରେ ପଚିଶ ଜଣ ଦସ୍ୟୁ ଥିଲେ । ସେମାନଙ୍କ ଭୟରେ କେହି ସେ ବନରେ ପ୍ରବେଶ କରିବାକୁ ସାହସୀ ହେଉ ନ ଥିଲେ । କିନ୍ତୁ ବ୍ରାହ୍ମଣ ଯୁବକ ନିର୍ଭିକ ଭାବରେ ସେହି ବନରେ ଅଗ୍ରସର ହେଲେ । ଏକ ସ୍ଥାନରେ ଦସ୍ୟୁ-ମାନେ ଗୋଟିଏ ହରିଣର ମାଂସ ରନ୍ଧନ କରି ଭୋଜନର ଆୟୋ-ଜନ କରୁଥିଲେ । ଜଣେ ଯୁବକ ଏକ ସୁନ୍ଦରୀ ରମଣୀ ସହିତ ଆସୁ-ଥିବାର ଦେଖି ସେ ଦୁହିଁଙ୍କୁ ଆକ୍ରମଣ କରିବାକୁ ବାହାରିଲେ; କିନ୍ତୁ ଦସ୍ୟୁଦଳପତି ଯୁବକକୁ ଦେଖିଲା ମାତ୍ରେ ଜାଣି ପାରିଲା ଯେ ଏହାଙ୍କ-ଠାରେ ବିଶେଷ ଶକ୍ତି ଅଛି । ତେଣୁ ସେ ଯୁବକ ଓ ତାଙ୍କ ପତ୍ନୀଙ୍କୁ ଆକ୍ରମଣ ନ କରିବା ପାଇଁ ତାର ଅନୁଚରମାନଙ୍କୁ ଆଦେଶ ଦେଲା ।

ବ୍ରାହ୍ମଣ ଯୁବକ ଦସ୍ୟୁଦଳପତିର ବ୍ୟବହାରରେ ଉତ୍ସାହିତ ହୋଇ ସ୍ତ୍ରୀକୁ କହିଲେ, "ଯାଅ, ସେମାନେ ମୃଗମାଂସ ସିଦ୍ଧ କରି-ଅଛନ୍ତି । କିଛି ସିଦ୍ଧମାଂସ ତାଙ୍କଠୁ ଆଣ; ଆମେ ଖାଇବା ।"

ଦଳପତି ଭାବିଲେ, "ଏ ହେଉଛନ୍ତି ଜଣେ ମହାନ୍ ବ୍ୟକ୍ତି । ତାଙ୍କୁ ସିଦ୍ଧମାଂସ ଦେବା ଉଚିତ ହେବ ନାହିଁ ।" ତେଣୁ ସେ କିଛି ଅପକ୍ୱ ମାଂସ ଦେଲେ ।

ସେତେବେଳକୁ ଯୁବକଙ୍କ ମନରେ ବଡ଼ ଅଭିମାନ ଆସି-ଥିଲା । ସେ ଅପକ୍ୱମାଂସ ଦେଖି କ୍ରୋଧାନ୍ୱିତ ହୋଇ ଉଠିଲେ ଓ ଦସ୍ୟୁମାନଙ୍କୁ ଭର୍ତ୍ସନା କଲେ । ଏଥିରେ ଦସ୍ୟୁମାନେ ମଧ୍ୟ କ୍ରୁଦ୍ଧ ହୋଇ ତାଙ୍କୁ ଆକ୍ରମଣ କରିବାକୁ ବାହାରିଲେ । ଯୁବକଙ୍କ ନିକ-ଟରେ ମୋଟରେ ପଚାଶଟି ଶର ଥିଲା । ସେଥିରୁ ଗୋଟିଏ ମାତ୍ର ସେ ହସ୍ତୀକୁ ବଧ କରିଥିଲେ । ଅବଶିଷ୍ଟ ଅଣଚାଶଟି ଶରରେ ସେ ଅଣ-ଚାଶ ଜଣ ଦସ୍ୟୁଙ୍କୁ ବଧ କଲେ । କେବଳ ଦଳପତିଙ୍କୁ ମାରିବାପାଇଁ ତାଙ୍କ ପାଖରେ ଆଉ ଶର ନଥିଲା । ତେଣୁ ସେ ଦଳପତିକୁ ମାଡ଼ିବସି ନିଜର ସ୍ତ୍ରୀକୁ କହିଲେ, ମୋର ତରବାରିଟା ମୋ ହାତକୁ ଦିଅ ।"

ଏଥି ମଧ୍ୟରେ ତାଙ୍କ ସ୍ତ୍ରୀର ମନରେ ଏକ ଭୀଷଣ ପରିବର୍ତ୍ତନ ଆସିଥିଲା । ଦସ୍ୟୁଦଳପତିର ଅଙ୍ଗସୌଷ୍ଠବ ଓ ସାହସ ଦେଖି ସେ ତା ନିକଟରେ ନିଜ ହୃଦୟ ଅର୍ପଣ କରି ସାରିଥିଲା । ସେ ସ୍ୱାମୀଙ୍କ ହାତରେ ତରବାରିର ଖୋଳଟି ମାତ୍ର ଦେଇ ଦଳପତି ହାତରେ ତରବାରିଟି ଦେଲା । ମୁହୂର୍ତ୍ତକ ମଧ୍ୟରେ ଦଳପତି ଯୁବକର ମସ୍ତକ ଛେଦନ କରି ତାଙ୍କ କବଳରୁ ମୁକ୍ତ ହେଲା । ଯୁବତୀ ଆନନ୍ଦରେ ଦସ୍ୟୁଦଳପତିର ଅନୁଗମନ କଲା । ପଥ ମଧ୍ୟରେ ଦଳପତି ଯୁବତୀର ପରିଚୟ ପଚାରିବାରୁ ସେ କହିଲା, "ମୋର ପିତା ହେଉଛନ୍ତି, ତକ୍ଷ-ଶିଳାର ଜଣେ ପ୍ରସିଦ୍ଧ ଆଚାର୍ଯ୍ୟ । ଏହି ଯୁବକ ମୋ ପିତାଙ୍କଠାରୁ ଧନୁର୍ବିଦ୍ୟା ଶିକ୍ଷାକରି ବିଶେଷ କୃତିତ୍ୱ ଅର୍ଜିଥିଲେ । ତେଣୁ ପିତା ମୋତେ ତାଙ୍କ ସଙ୍ଗେ ବିବାହ କରାଇ ଦେଇଥିଲେ । ଆମେ ବାରା-ଣସୀକୁ ଯାଉଥିଲୁ । ଏବେ ମୁଁ ତୁମ ପ୍ରତି ଏତେ ଅନୁରକ୍ତ ଯେ ତାଙ୍କର ବିନାଶ ପାଇଁ ତୁମକୁ ସାହାଯ୍ୟ କରିଅଛି ।"

ଦସ୍ୟୁଦଳପତି ଚିନ୍ତା କରିବାକୁ ଲଗିଲ—"ଏ ନାରୀ ବିଶ୍ୱାସର ପାତ୍ର ନୁହେଁ । ସେ ମୋତେ ଦେଖି ନିଜର ବିବାହିତ ପତିକୁ ବଧ କରାଇ ଅଛି । କାଲି ଅନ୍ୟ ଜଣେ ପୁରୁଷର ପ୍ରେମ ନିମନ୍ତେ ସେ ମୋର ପ୍ରାଣ ନେଇପାରେ । ତେଣୁ ଏହାର ସଙ୍ଗ ତ୍ୟାଗ କରିବା ଉଚିତ ।"

କିଛି ଦୂର ଯିବାପରେ ସେମାନେ ଗୋଟିଏ ନଦୀ ତୀରରେ ଉପସ୍ଥିତ ହେଲେ । ଦସ୍ୟୁଦଳପତି ଏହିଠାରେ ଯୁବତୀକୁ ଛାଡ଼ି ଚାଲିଯିବାକୁ ସ୍ଥିର କରି କହିଲା, "ପ୍ରିୟେ, ଏ ନଦୀ ଜଳପୂର୍ଣ୍ଣ ଓ ଏଥିରେ କୁମ୍ଭୀର ଅଛନ୍ତି । ତୁମେ ଏତେଗୁଡ଼ିଏ ବସନଭୂଷଣ ସହିତ କିପରି ମୋ ସଙ୍ଗରେ ଯାଇପାରିବ ?" ଯୁବତୀ କହିଲା, "ମୋର ଅଳଙ୍କାର ଗୁଡ଼ିକ ବାସ୍ତବରେ ନଦୀରେ ଯିବା ସମୟରେ ମୋ ପକ୍ଷରେ ପ୍ରତିବନ୍ଧକ ହେବ । ତୁମେ ସେଗୁଡ଼ିକ ନେଇ ଅପର ତୀରରେ ରଖି ଫେରି ଆସିବ ଓ ମୋତେ ସଙ୍ଗରେ ନେଇ ପୁଣି ଯିବ ।" ଏହା କହି ସେ ତାର ସମସ୍ତ ଅଳଙ୍କାର ଦସ୍ୟୁଦଳପତିକୁ ଦେଲା । ସେଗୁଡ଼ିକ ନେଇ ଦଳପତି ନଦୀ ପାର ହୋଇଗଲା । ଅପର ତୀରରେ ପହଞ୍ଚିଲା ମାତ୍ରେ ସେ ବେଗରେ ଚାଲିଯିବାକୁ ଲଗିଲା । ଯୁବତୀ ଡାକିଲା, "ପ୍ରିୟ, ମୋର ଅଳଙ୍କାର ନେଇ ଚାଲିଯାଉଛ କିପରି ? ଫେରିଆସି ମୋତେ ଅପର ତୀରକୁ ନେଇଯାଅ ।"

ଦସ୍ୟୁଦଳପତି ଯାଉ ଯାଉ କହିଲା, "ତୁମର ମନରେ ଦୃଢ଼ତା ନାହିଁ । କାହାପ୍ରତି ତୁମେ କେତେବେଳେ ଅନୁରକ୍ତି ପ୍ରକାଶ କରି, କାହାର ପ୍ରାଣନେବ ଏଥିରେ ସ୍ଥିରତା ନାହିଁ । ଯେ କୌଣସି ମୁହୂର୍ତ୍ତରେ ତୁମେ ମୋତେ ତ୍ୟାଗକରି ଅନ୍ୟପୁରୁଷକୁ ଆଶ୍ରୟ କରିପାର । ତେଣୁ ମୁଁ ତୁମଠାରୁ ଦୂରକୁ ଚାଲିଯାଉଛି । ତୁମେ ସେହିଠାରେ ଥାଅ ।"

ଯୁବତୀ ନିଜକୁ ନିତାନ୍ତ ଅସହାୟ ମନେକରି ଗୋଟିଏ ବୃଦା-ମୂଳେ ବସି ରହିଲା ଓ ଚକ୍ଷୁରୁ ଲୁହ ଗଡ଼ାଇଲା । ଏହି ସମୟରେ ଦେବରାଜ ଶକ୍ର ଜାଣିପାରିଲେ, ଯୁବତୀ ନିଜର ପ୍ରବୃତ୍ତି ଦ୍ୱାରା ଚାଳିତ ହୋଇ ସ୍ୱାମୀ ତଥା ପ୍ରେମିକ ଉଭୟଙ୍କୁ ହରାଇ ଅଛି । ତାହାକୁ ଉପଯୁକ୍ତ ଶିକ୍ଷା ଦେବା ଉଦ୍ଦେଶ୍ୟରେ ସେ ମାତଳି ଓ ପଞ୍ଚଶିଖ ଏ ଦୁହିଁଙ୍କୁ ସଙ୍ଗରେ ନେଇ ପୃଥିବୀକୁ ଆସିଲେ । ସେ ନିଜେ ଗୋଟିଏ ଶୃଗାଳ ରୂପରେ ଖଣ୍ଡିଏ ମାଂସ ଧରି ସେ ସ୍ତ୍ରୀ ଆଗରେ ପହଞ୍ଚିଲେ । ମାତଳି ଗୋଟିଏ ମାଛ ରୂପଧରି ନଦୀରୁ ତାଙ୍କ ପାଖକୁ ଡେଇଁ ପଡ଼ିଲା । ଶୃଗାଳରୂପୀ ଶକ୍ର ମୁହଁରୁ ମାଂସ ଖଣ୍ଡିକ ତଳେ ରଖି ଦେଇ ମାଛକୁ ଧରିବାକୁ ଗଲାବେଳେ ପଞ୍ଚଶିଖ ଚିଲରୂପରେ ଉଡ଼ି ଆସି ମାଂସ ଖଣ୍ଡିକ ନେଇଗଲା ଓ ଏହି ଅବସରରେ ମାଛ ନଦୀକୁ ଡେଇଁ ପଡ଼ିଲା ।

ଯୁବତୀ ବୃଦାମୂଳେ ବସି କାନ୍ଦୁ କାନ୍ଦୁ ଏହି ଦୃଶ୍ୟ ଦେଖି ପାରିଲା । ସେ କହି ଉଠିଲା—"ଅତି ଲୋଭ କରି ଶୃଗାଳ ମାଂସ ଓ ମାଛ ଉଭୟଙ୍କୁ ହରାଇଲା ।" ଶୃଗାଳ ତାହା ଶୁଣି କହିଲା—"ହେ ସୁନ୍ଦରୀ, ବୃଦାମୂଳେ ବସି ହସିବାର କାରଣ ନାହିଁ । ବରଂ ତୁମ ପକ୍ଷରେ କାନ୍ଦିବା ହିଁ ଉଚିତ ।'

ଯୁବତୀ କହିଲା, "ରେ ମୂର୍ଖ ଶୃଗାଳ । ତୁ ମାଂସକୁ ହରାଇଲୁ ମାଛକୁ ମଧ୍ୟ ହରାଇଲୁ ! ତୋ ମୂର୍ଖତାର ପରିଣାମ ଦେଖି କିଏ ନ ହସିବ ?"

ଶୃଗାଳ କହିଲା, "ତୁମେ ପରର ଦୋଷ ଦେଖିବାରେ ଖୁବ୍ ନିପୁଣ; କିନ୍ତୁ ନିଜ ଦୋଷକୁ ଦେଖିପାରୁନାହଁ । ମୁଁ ମାଂସ ଓ ମାଛ ଉଭୟଙ୍କୁ ହରାଇବା ଦେଖି ହସୁଛ; କିନ୍ତୁ ତୁମେ ସ୍ୱାମୀ ଓ ପ୍ରେମିକ ଦୁହିଁଙ୍କୁ ହରାଇ ନାହଁ କି ।"

ଯୁବକଟି ନିଜର ଭ୍ରମ ବୁଝିପାରି କହିଲା, "ହେ ଶୃଗାଳ, ତୁମର କଥା ଯଥାର୍ଥ । ମୁଁ ତୁମଠାରୁ ଅଧମ । ମୁଁ ଘୋର ପାପକରି ତାର ଫଳ ପାଇଛି । ଏଣିକି କାହାରିକୁ ବିବାହ କରି ପବିତ୍ର ଦାମ୍ପତ୍ୟ ଜୀବନ ଯାପନ କରିବି । ଆଉ ପରପୁରୁଷଠାରେ ଆସକ୍ତି ପ୍ରକାଶ କରିବି ନାହିଁ ।"

ଶକ୍ର ଯୁବତୀକୁ ଭର୍ତ୍ସନା କରି କହିଲେ, "ତୁମେ ଭବିଷ୍ୟତରେ ପାପକାର୍ଯ୍ୟ କରିବ ନାହିଁ ବୋଲି କହୁଛ । କିନ୍ତୁ ତୁମକୁ କିଏ ବିଶ୍ୱାସ କରିବ । ଆଜି ଯେ କଣ୍ଠାଗ୍ରଟାଏ ସ୍ନେହରେ, କାଲି ସେ ବାସନ ସ୍ନେହ କରିବ । ତୁମେ ତୁମ ସ୍ୱାମୀର ଜୀବନ ନେଇଛ ପରେ ହୁଏତ ଆହୁରି ବଡ଼ ପାପ କରିବ ।"

ଏହା ଶୁଣି ସ୍ତ୍ରୀଲୋକଟି ଘୋର ଲଜ୍ଜା ଅନୁଭବ କଲା । ଶକ୍ର, ମାତଳି ଓ ପଞ୍ଚଶିଖଙ୍କୁ ସଙ୍ଗରେ ନେଇ ସ୍ୱର୍ଗପୁରକୁ ଫେରିଗଲେ । ***

## ଧମ୍ମଦ୍ଧଜ ଜାତକ

ଏକଦା ଯଶପାଣି ନାମକ ଜଣେ ରଜା ବାରଣସୀରେ ରାଜତ୍ୱ କରୁଥିଲେ । ତାଙ୍କର ସେନାଧ୍ୟକ୍ଷଙ୍କର ନାମ ଥିଲା କାଳକ । ବୋଧି-ସତ୍ତ୍ୱ ଏହି ରାଜାଙ୍କର କୁଳପୁରୋହିତ ହୋଇଥିଲେ । ସେତେ-ବେଳେ ତାଙ୍କର ନାମଥିଲା ଧର୍ମଧ୍ୱଜ । ଧର୍ମଧ୍ୱଜ ରାଜାଙ୍କର କେବଳ ପୁରୋହିତ ନ ଥିଲେ । ରାଜକାର୍ଯ୍ୟରେ ମଧ୍ୟ ସେ ରାଜାଙ୍କୁ ପରାମର୍ଶ ଦେଉଥିଲେ । ସେହିପରି ସେନାଧ୍ୟକ୍ଷ ମଧ୍ୟ ପ୍ରଜାମାନଙ୍କର ହାରି

ଗୁହାର ବୁଝୁଥିଲେ । ସେନାଧ୍ୟକ୍ଷ କାଳକ ସାଧୁ ପ୍ରକୃତିର ଲୋକ ନ ଥିଲେ । ନ୍ୟାୟ ବିଚାର ନ କରି ସେ ଉତ୍କୋଚ ଗ୍ରହଣ କରୁଥିଲେ ଓ ପ୍ରକୃତ ଅପରାଧୀ ଦଣ୍ଡିତ ହେବା ପରିବର୍ତ୍ତେ ନିରୀହ ନିର୍ଦ୍ଦୋଷ ପ୍ରଜାମାନେ ତାଙ୍କଦ୍ୱାରା ଉତ୍ପୀଡ଼ିତ ହେଉଥିଲେ ।

ଦିନେ ବୋଧିସତ୍ତ୍ୱ ରାଜସଭାକୁ ଆସୁଥିବାବେଳେ ଜଣେ ଲୋକ ତାଙ୍କର ପାଦତଳେ ପଡ଼ି ଜଣାଇଲା, "ଆପଣଙ୍କ ପରି ଲୋକ ରାଜାଙ୍କ ପାଖେ ଥାଉ ଥାଉ ଏ ରାଜ୍ୟରେ ଘୋର ଅନ୍ୟାୟ ଚାଲିଛି । ନ୍ୟାୟ ବିଚାର ଲୋପ ପାଇଲାଣି, ଯିଏ ସେନାଧ୍ୟକ୍ଷଙ୍କୁ ଉତ୍କୋଚ ଦେଇ ପାରୁଛି, ତାହାର ହିଁ ଜୟ ହେଉଛି । ପ୍ରଜାମାନେ ନିଜର ନ୍ୟାଯ୍ୟ ଅଧିକାରରୁ ବଞ୍ଚିତ ହେଉଅଛନ୍ତି ।" ଏହିପରି ସେ ନିଜର ଦୁଃଖ ଜଣାଇଲା ।

ବୋଧିସତ୍ତ୍ୱ ଦେଖିଲେ ଯେ, ଲୋକଟି ପ୍ରକୃତରେ ନିର୍ଦ୍ଦୋଷ; ତାର ସମ୍ପତ୍ତିରୁ ତାକୁ ବଞ୍ଚିତ କରାଯାଇଅଛି । ଶତ ଶତ ଲୋକ ଏହା ଜାଣି ପାରୁଥିଲେ ହେଁ କେହି କାଳକଙ୍କ ଭୟରେ କିଛି କହି ପାରୁନାହାନ୍ତି ।

ବୋଧିସତ୍ତ୍ୱ ଉକ୍ତ ଲୋକଟିକୁ ସଙ୍ଗରେ ନେଇ ବିଚାରାଳୟକୁ ଗଲେ । ଶତ ଶତ ଲୋକ ସଙ୍ଗରେ ଚାଲିଲେ । ସାକ୍ଷ୍ୟପ୍ରମାଣ ଗ୍ରହଣ କରି ବୋଧିସତ୍ତ୍ୱ ଅଭିଯୋଗର ପୁନର୍ବିଚାର କଲେ ଓ କାଳକଙ୍କର ନିଷ୍ପତ୍ତିକୁ ବଦଳାଇ ନ୍ୟାୟପୂର୍ଣ୍ଣ ଆଦେଶ ଦେଲେ । ଉପସ୍ଥିତ ଜନସାଧାରଣ ଏଥିରେ ଆନନ୍ଦ ପ୍ରକାଶ କରି ବୋଧିସତ୍ତ୍ୱଙ୍କର ନ୍ୟାୟପରତାର ପ୍ରଶଂସା କଲେ । ସେମାନେ ତାଙ୍କର ଜୟଗାନ କରି ଆକାଶ କମ୍ପାଇଦେଲେ ।

ଏହି ଜୟଧ୍ୱନି ରାଜାଙ୍କର କର୍ଣ୍ଣଗୋଚର ହେବାରୁ ସେ ଏଥିର କାରଣ ଅନୁସନ୍ଧାନ କଲେ । କର୍ମଚାରୀମାନେ ଜଣାଇଲେ, "ମହା-

ରାଜ ! ଧର୍ମଧ୍ୱଜଙ୍କର ନ୍ୟାଯ୍ୟ ବିଚାରରେ ଲୋକେ ସନ୍ତୁଷ୍ଟ ହୋଇ ତାଙ୍କର ଜୟଗାନ କରୁଅଛନ୍ତି ।"

ତହୁଁ ରାଜା ବୋଧିସତ୍ତ୍ୱଙ୍କୁ ଡକାଇ ସମସ୍ତ ଘଟନା ବୁଝିଲେ । କାଳକଙ୍କ ବିଚାରରେ ଲୋକେ ଅସନ୍ତୁଷ୍ଟ; କିନ୍ତୁ ଧର୍ମଧ୍ୱଜଙ୍କ ବିଚାରରେ ସମସ୍ତେ ସନ୍ତୁଷ୍ଟ । ଏହା ଜାଣିପାରି ସେ ଧର୍ମଧ୍ୱଜଙ୍କୁ ବିଚାରକ ପଦ ଗ୍ରହଣ କରିବାକୁ ଅନୁରୋଧ କଲେ । କିନ୍ତୁ ଧର୍ମଧ୍ୱଜ ଏହି ପ୍ରସ୍ତାବରେ ସ୍ୱୀକୃତ ହେଲେ ନାହିଁ । ତହୁଁ ରାଜା କହିଲେ, "ପ୍ରଜାମାନଙ୍କ ପାଇଁ ରାଜା । ଯହିଁରେ ପ୍ରଜାମାନଙ୍କର ସନ୍ତୋଷ, ତାହାହିଁ ରାଜାଙ୍କର କର୍ତ୍ତବ୍ୟ । ପ୍ରଜାମାନେ ତୁମର ନ୍ୟାଯ୍ୟ ବିଚାରରେ ସନ୍ତୁଷ୍ଟ; ତେଣୁ ତୁମେ ହିଁ ସେ ଦାୟିତ୍ୱ ଗ୍ରହଣ କରିବା ଉଚିତ ।" ଏହିପରି ରାଜାଙ୍କ ବିଶେଷ ଅନୁରୋଧରେ ବୋଧିସତ୍ତ୍ୱ ବିଚାରକ ପଦ ଗ୍ରହଣ କଲେ ।

ଏବେ ପ୍ରଜାମାନେ ସନ୍ତୁଷ୍ଟ ହେଲେ ସତ; କିନ୍ତୁ କାଳକଙ୍କର ଅନ୍ୟାଯ୍ୟ ଉପାର୍ଜନ ବନ୍ଦ ହୋଇଗଲା । ପୂର୍ବେ ସେ ଉପଢ଼ୌକନ ଓ ଉତ୍କୋଚ ଆକାରରେ ପ୍ରଚୁର ଅର୍ଥ ପାଉଥିଲେ । ଏବେ ସେ ପନ୍ଥା ରୁଦ୍ଧ ହୋଇଯିବାରୁ କାଳକ ଧର୍ମଧ୍ୱଜଙ୍କର ଅନିଷ୍ଟ ଚିନ୍ତା କରିବାକୁ ଲାଗିଲେ । ଟିକିଏ ସୁଯୋଗ ପାଇବାମାତ୍ରେ ସେ ରାଜାଙ୍କ ନିକଟରେ ଧର୍ମଧ୍ୱଜଙ୍କର ନିନ୍ଦା କରିବାକୁ ଛାଡ଼ିଲେ ନାହିଁ । ଦିନେ ସେ ଏକାନ୍ତରେ ରାଜାଙ୍କୁ କହିଲେ, "ମହାରାଜ ! ଆପଣଙ୍କୁ ବିତାଡ଼ିତ କରି ରାଜ୍ୟ ଅଧିକାର କରିବା ହେଉଛି ଧର୍ମଧ୍ୱଜଙ୍କର ପ୍ରକୃତ ଉଦ୍ଦେଶ୍ୟ । ସେ ନଗରର ପ୍ରଧାନ ଲୋକମାନଙ୍କୁ ନିଜ ପକ୍ଷକୁ ନେଇ ଆପଣଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର ଚଳାଇଛନ୍ତି ।"

ରାଜା ଏ କଥାରେ ବିଶ୍ୱାସ କରୁ ନ ଥିବାର ଜାଣି କାଳକ କହିଲେ, "ଆପଣ ସ୍ୱୟଂ ମୋ କଥାର ସତ୍ୟତା ପରୀକ୍ଷା କରିପାରନ୍ତି ।

ଧର୍ମ ଧ୍ୱଜ ବିଚାରାଳୟକୁ ଆସିଲାବେଳେ ଆପଣ ଟିକଏ ଲକ୍ଷ୍ୟ କଲେ ତାଙ୍କର ସମର୍ଥକମାନଙ୍କୁ ଦେଖି ପାରିବେ ।"

ରାଜା ଗୋପନରେ ରହି ଧର୍ମଧ୍ୱଜଙ୍କର ବିଚାରାଳୟ ଉପରେ ଦୃଷ୍ଟିପାତ କଲେ । ଶତ ଶତ ପ୍ରଜା ନିଜ ନିଜର ଅଭିଯୋଗ ଜଣାଇବା ପାଇଁ ବିଚାରାଳୟରେ ରୁଣ୍ଡ ହୋଇଥିଲେ । ସେମାନଙ୍କୁ ଦେଖି ରାଜା ମନେକଲେ ଯେ ଧର୍ମଧ୍ୱଜ ପ୍ରକୃତରେ ଅନେକ ଅନୁଚର ଦ୍ୱାରା ପରିବେଷ୍ଟିତ ଓ ସେ ତାଙ୍କୁ ସିଂହାସନଚ୍ୟୁତ କରିପାରନ୍ତି ।

ଧର୍ମଧ୍ୱଜଙ୍କ ପ୍ରତି ସନ୍ଦେହ ପୋଷଣ କରି ରାଜା କାଳକଙ୍କୁ କହିଲେ, "ତୁମର କଥା ଯଥାର୍ଥ । ଏହାର କି ପ୍ରତିକାର କରି-ଯାଇପାରେ ?

କାଳକ ନିଜର ଅଭିଳାଷ ଚରିତାର୍ଥ ହେବାକୁ ଯାଉଥିବାର ଦେଖି ଆନନ୍ଦରେ କହିଲେ, "ମହାରାଜ । ଶୀଘ୍ର ଶତ୍ରୁକୁ ବିନାଶ କରି ରାଜ୍ୟକୁ ନିଷ୍କଣ୍ଟକ କରିବା ଉଚିତ ।"

ରାଜା କହିଲେ, "ଲୋକେ ଧର୍ମଧ୍ୱଜ ପ୍ରତି ଅନୁରକ୍ତ । କୌଣସି କାରଣ ନ ଥାଇ ତାଙ୍କୁ ବଧ କରାଇଲେ ପ୍ରଜାମାନେ ବିଦ୍ରୋହୀ ହୋଇ ଉଠିବେ । ଏ ବିପଦଠାରୁ ସେ ବିପଦ ବଳି ପଡ଼ିବ ।"

କାଳକ ପରାମର୍ଶ ଦେଇ କହିଲେ, "ଆପଣଙ୍କର ସନ୍ଦେହ ଯଥାର୍ଥ । ତାଙ୍କୁ କୌଣସି ଗୋଟିଏ ଅସାଧ୍ୟ କାର୍ଯ୍ୟ ସାଧନ କରିବାକୁ ଆଦେଶ ଦିଅନ୍ତୁ । ସେ ତାହା କରିପାରିବେ ନାହିଁ । ଆଦେଶ ପାଳନ କରି ନଥିବାରୁ ଆପଣ ତାଙ୍କୁ ପ୍ରାଣଦଣ୍ଡ ଦେବେ । ଏଥିରେ କେହି କିଛି କହିବାକୁ ନ ଥିବ ।"

ରାଜା ଅନେକ ଚିନ୍ତାକରି କହିଲେ, "ଧର୍ମଧ୍ୱଜ ଖୁବ୍ ଚତୁର । ମୁଁ ଯେଉଁ କାର୍ଯ୍ୟ କରିବାକୁ କହିବି, ସେ କରିଦେଇ ପାରିବ ।

ତେଣୁ ଗୋଟିଏ ଅସମ୍ଭବ କାର୍ଯ୍ୟ କୁହ; ଯାହା କି ସେ କରିପାରିବ ନାହିଁ ।”

କାଳକ ପରାମର୍ଶ ଦେଲେ, “ମହାରାଜ ! ଗୋଟିଏ ପ୍ରମୋଦ ଉଦ୍ୟାନ ପ୍ରସ୍ତୁତ କରିବାକୁ ଅନ୍ତତଃ ପାଞ୍ଚବର୍ଷ ସମୟ ଲାଗେ । ତାଙ୍କୁ ଆଦେଶ ଦିଅନ୍ତୁ, ଦିନକ ଭିତରେ ସେ ପତ୍ରପୁଷ୍ପଫଳଶୋଭିତ ଗୋଟିଏ ପ୍ରମୋଦ ଉଦ୍ୟାନ କରିଦେଲେ ଆପଣ ସେଥିରେ ବିହାର କରିବେ । ଏହା ସେ କଦାପି କରିପାରିବେ ନାହିଁ । ସେହି ଅପ-ରାଧରେ ଆପଣ ତାଙ୍କର ପ୍ରାଣଦଣ୍ଡ ବିଧାନ କରିବେ ।”

କାଳକଙ୍କର ପରାମର୍ଶ ଅନୁସାରେ ରାଜା ଧର୍ମଧ୍ୱଜଙ୍କୁ ଡାକି ସେହିପରି ଆଦେଶ ଦେଲେ ଓ ସାବଧାନ କରିଦେଇ କହିଲେ, “ନୂତନ ଉଦ୍ୟାନରେ କାଲି ସନ୍ଧ୍ୟାରେ ଆମେ ବିହାର କରିବୁ । ସେତେବେଳକୁ ଉଦ୍ୟାନ ସମ୍ପୂର୍ଣ୍ଣ ହୋଇ ନଥିଲେ ତୁମକୁ ପ୍ରାଣଦଣ୍ଡ ଦିଆଯିବ ।”

“ଚେଷ୍ଟା କରି ଦେଖିବି” ଏତିକି କହି ଧର୍ମଧ୍ୱଜ ରାଜାଙ୍କ ନିକଟରୁ ବିଦାୟ ନେଲେ ।

ଧର୍ମଧ୍ୱଜ ଚିନ୍ତା କଲେ, “ଏ ନିଶ୍ଚୟ ସେହି କାଳକର ଚକ୍ରାନ୍ତ । ତାର ଅନ୍ୟାୟ ଧନ ଉପାର୍ଜନର ରାସ୍ତା ବନ୍ଦ ହୋଇଥିବାରୁ ସେ ମୋ ବିରୁଦ୍ଧରେ ରାଜାଙ୍କୁ କହି ଏ ବ୍ୟବସ୍ଥା କରିଛି । କିନ୍ତୁ ମୁଁ କୌଣସି ଅନ୍ୟାୟ କାର୍ଯ୍ୟ କରିନାହିଁ । ଧର୍ମ ମୋର ସହାୟ ହେବେ ।”

ରାତିରେ ଭୋଜନ ପରେ ଧର୍ମଧ୍ୱଜ ଶୟନ କରିବାକୁ ଗଲେ । ଦେବରାଜ ଶକ୍ର ତାଙ୍କ ଶୟନାଗାରରେ ଆବିର୍ଭୂତ ହୋଇ ନିଜର ପରିଚୟ ଦେଇ ପଚାରିଲେ, “ଧର୍ମଧ୍ୱଜ, ତୁମର ଚିନ୍ତାର କାରଣ କଅଣ ?”

ଧର୍ମଧ୍ୱଜ ଉତ୍ତର କଲେ, "ରାଜାଙ୍କର ଆଦେଶ, କାଲି ସନ୍ଧ୍ୟାପୂର୍ବରୁ ତାଙ୍କର ବିହାର ପାଇଁ ଗୋଟିଏ ପ୍ରମୋଦ ଉଦ୍ୟାନ କରି ଦେବାକୁ ହେବ ।"

ଶକ୍ର ଏହା ଶୁଣି କହିଲେ, "ତୁମେ ସେଥିପାଇଁ ଚିନ୍ତା କର ନାହିଁ । ମୁଁ କାଲି ସନ୍ଧ୍ୟାପୂର୍ବରୁ ନନ୍ଦନବନ ଭଳି ଗୋଟିଏ ଉପବନ କରାଇ ଦେବି । ତାହା ବୃକ୍ଷଲତା ପତ୍ରପୁଷ୍ପଫଳରେ ମଣ୍ଡିତ ହୋଇଥିବ । ତୁମେ ନିଶ୍ଚିନ୍ତରେ ନିଦ୍ରାଯାଅ ।"

ବୋଧିସତ୍ତ୍ୱ ସକାଳେ ଉଠି ଦେଖିଲେ ସୁନ୍ଦର ଉଦ୍ୟାନଟିଏ ନେତ୍ର ହରଣ କରୁଅଛି । ସେ ରାଜାଙ୍କୁ ଜଣାଇଲେ, "ଆପଣଙ୍କ ଆଦେଶ ଅନୁସାରେ ପ୍ରମୋଦ ଉଦ୍ୟାନ ହୋଇ ସାରିଅଛି ।"

ରାଜା ଉପବନଟି ଦେଖି ତାର ଶୋଭାରେ ମୁଗ୍‌ଧ ହେଲେହେଁ ତାଙ୍କର ଉଦ୍ଦେଶ୍ୟ ସିଦ୍ଧ ନ ହେବାରୁ ମନେମନେ ଦୁଃଖିତ ହେଲେ । ରାତିରେ ସେ କାଳକଙ୍କୁ ଡକାଇ ତାଙ୍କର ଉଦ୍ଦେଶ୍ୟ ବିଫଳ ହୋଇଥିବାର କହିଲେ । କାଳକ କହିଲେ, "ମହାରାଜ ! ମୋର ଅଭିଯୋଗ ଯେ ସତ୍ୟ ତାହା ପ୍ରମାଣିତ ହେଲା । ଯେଉଁ ଲୋକ ଏପରି ଅସାଧ୍ୟ କାର୍ଯ୍ୟ କରିପାରେ, ତାହା ପକ୍ଷରେ ଆପଣଙ୍କୁ ସିଂହାସନରୁ ବିତାଡ଼ିତ କରିବା କଦାପି ଅସାଧ୍ୟ ହୋଇ ନପାରେ ।"

ରାଜାଙ୍କ ମନରେ ମଧ୍ୟ ସେହି ସନ୍ଦେହ ଟିକିଏ ଦୃଢ଼ୀଭୂତ ହେଲା । ସେ ପୁଣି କାଳକଙ୍କର ପରାମର୍ଶ ଗ୍ରହିଲେ । କାଳକ କହିଲେ, "ଧର୍ମଧ୍ୱଜଙ୍କୁ ଆଦେଶ ଦିଅନ୍ତୁ—ଏହି ଉପବନରେ ଉପଯୁକ୍ତ ଗୋଟିଏ ସରୋବର କରିଦିଅ । ସେଥିରେ ନବରତ୍ନ ଖଚିତ ପ୍ରସ୍ତର ସୋପାନ ରହିବ । କାଲି ସନ୍ଧ୍ୟା ପୂର୍ବରୁ ଆମେ ସେହି ସରୋବରରେ କ୍ରୀଡ଼ା କରିବୁ । ଏହା ନକରି ପାରିଲେ ତୁମର ପ୍ରାଣଦଣ୍ଡ ହେବ ।"

ରାଜା ବୋଧିସତ୍ତ୍ୱଙ୍କୁ ଡକାଇ ସେହିପରି ଆଦେଶ ଦେଲେ । ସେ କେବଳ ଉତ୍ତର କଲେ, "ଆପଣଙ୍କ ଆଦେଶ ପାଳନ କରିବାକୁ ଯଥାସାଧ୍ୟ ଉଦ୍ୟମ କରିବ ।"

ସେଦିନ ରାତିରେ ମଧ୍ୟ ଶକ୍ର ବୋଧିସତ୍ତ୍ୱଙ୍କୁ ଶୟନଗୃହରେ ଦର୍ଶନ ଦେଇ କହିଲେ, ତୁମର ଚିନ୍ତାର କାରଣ ନାହିଁ । ତୁମ ପାଇଁ ମୁଁ ସରୋବର ନିର୍ମାଣ କରାଇ ଦେବି ।" ପରଦିନ ପ୍ରାତଃ-କାଳରେ ଉଦ୍ୟାନ ନିକଟରେ ସରୋବର ନିର୍ମିତ ହୋଇଥିବାର ଦେଖାଗଲା । ସେଥିରେ ବିବିଧ ରତ୍ନ ଖଚିତ ସୋପାନ ଥିବାରୁ ତାହା ଅପୂର୍ବଶ୍ରୀରେ ବିମଣ୍ଡିତ ହୋଇଥିଲା । ବୋଧିସତ୍ତ୍ୱ ରାଜାଙ୍କୁ ସମ୍ବାଦ ଦେଲେ—"ସରୋବର କାର୍ଯ୍ୟ ସମାପ୍ତ ହୋଇଅଛି ।"

ରାଜା ନିଜେ ଆସି ସରୋବରର ଶୋଭା ଦେଖି ବିମୋହିତ ହେଲେ; କିନ୍ତୁ ଧର୍ମଧ୍ୱଜ ଏପରି ଅଦ୍ଭୁତ କାର୍ଯ୍ୟ କରିଥିବାରୁ ସେ ତାଙ୍କ ଉପରେ ସନ୍ତୁଷ୍ଟ ହେବା ପରିବର୍ତ୍ତେ ଆହୁରି କ୍ରୁଦ୍ଧ ହେଲେ ଓ ତାଙ୍କୁ ବିନାଶ କରିବାର ଉପାୟ ଚିନ୍ତା କଲେ ।

ରାଜା ପୁଣି କାଳକଙ୍କର ପରାମର୍ଶ ମାଗିବାରୁ ସେ କହିଲେ, "ମହାରାଜ ! ଏଥର ଧର୍ମଧ୍ୱଜକୁ ଆଦେଶ କରନ୍ତୁ, ସେ ଉପବନ ମଧ୍ୟରେ ଗୋଟିଏ ଉପଯୁକ୍ତ ପ୍ରମୋଦ ଭବନ କରିଦେଉ । ତାହା ହସ୍ତୀଦନ୍ତରେ ନିର୍ମିତ ହେବ । ଏହା ଦିନକ ମଧ୍ୟରେ କରି ନ ପାରିଲେ ତାର ଶିରଚ୍ଛେଦ କରାଯିବ ।"

ରାଜା ଧର୍ମଧ୍ୱଜଙ୍କୁ ସେହିପରି ଆଦେଶ ଦେଲେ । ଧର୍ମଧ୍ୱଜ ପୂର୍ବପରି ଅବିଚଳିତ ଭାବରେ ଉତ୍ତର କଲେ, "ଯଥାସାଧ୍ୟ ଚେଷ୍ଟା କରିବ ।"

ଏଥର ମଧ୍ୟ ଶକ୍ର ବୋଧିସତ୍ତ୍ୱଙ୍କୁ ଆଶ୍ୱାସନା ଦେଇ ଏପରି ଗୃହଟିର ନିର୍ମାଣଭାର ଗ୍ରହଣ କଲେ । ପ୍ରାତଃକାଳରେ ଦେଖାଗଲା,

ପ୍ରମୋଦ ଉଦ୍ୟାନରେ ହସ୍ତୀଦନ୍ତ ନିର୍ମିତ ଭବନ ଉଭା ହୋଇଛି । ରାଜା ସମ୍ବାଦ ପାଇ ପ୍ରମୋଦ ଭବନ ଦେଖିବାକୁ ଆସିଲେ । ତାଙ୍କର ଆଦେଶ ଯଥାଯଥ ପାଳିତ ହୋଇ ଥିବାର ଦେଖି ସେ ଚମତ୍କୃତ ହୋଇ ପଡ଼ିଲେ ।

ଯଥା ସମୟରେ କାଳକ ଏହା ଶୁଣିପାରି ରାଜାଙ୍କୁ ଉପଦେଶ ଦେଲେ, "ଧର୍ମଧ୍ୱଜଙ୍କୁ ଆଦେଶ କରନ୍ତୁ, ରାତିରେ ପ୍ରମୋଦଭବନ ଆଲୋକିତ କରିବା ପାଇଁ ସେଥିରେ ଗୋଟିଏ ମଣି ଖଞ୍ଜିଦେବ । ସେହି ଗୋଟିକର ଆଲୋକରେ ସମଗ୍ର ଭବନଟି ଆଲୋକିତ ହେବ ଓ ଆପଣ ରାତିରେ ସେଥିରେ ସ୍ୱଚ୍ଛନ୍ଦରେ ଯିବାଆସିବା କରି ପାରିବେ । ଏହା କରି ନ ପାରିଲେ ଆପଣ ତାକୁ ପ୍ରାଣଦଣ୍ଡ ଦେବେ ।"

ରାଜା ଧର୍ମଧ୍ୱଜଙ୍କୁ ଡକାଇ ଏହି ଆଦେଶ ଶୁଣାଇ କହିଲେ, "କାଲି ସନ୍ଧ୍ୟାବେଳକୁ ଏହା ହୋଇ ନଥିଲେ ତୁମର ପ୍ରାଣଦଣ୍ଡ ନିଶ୍ଚିତ ।"

ଏଥର ମଧ୍ୟ ଶକ୍ର ପୂର୍ବପରି ଧର୍ମଧ୍ୱଜଙ୍କୁ ସାହାଯ୍ୟ କଲେ ଓ ମଣିଟି ଅବସ୍ଥାପିତ ହୋଇ ସମଗ୍ର ପ୍ରମୋଦଭବନକୁ ଉଜ୍ଜ୍ୱଳ ଆଲୋକରେ ଉଦ୍‌ଭାସିତ କଲା । ଯଥା ସମୟରେ ରାଜା ମଣିଟିକୁ ଦେଖି ବାହାରେ ସନ୍ତୋଷ ପ୍ରକାଶ କଲେ ।

ସେଦିନ ରାତିରେ ପୁଣି ରାଜା ଓ ସେନାଧ୍ୟକ୍ଷ କାଳକଙ୍କ ମଧ୍ୟରେ ପରାମର୍ଶ ଚାଲିଲା । କାଳକ କହିଲେ, "ଧର୍ମଧ୍ୱଜ ନିଜ ଶକ୍ତିରେ ଏପରି ଅଦ୍ଭୁତ କାର୍ଯ୍ୟସବୁ କରିଥିବା ସମ୍ପୂର୍ଣ୍ଣ ଅସମ୍ଭବ । ନିଶ୍ଚୟ କୌଣସି ଦେବତା ତାର ସହାୟ ହୋଇ ସବୁ କରି ଦେଉ-ଅଛନ୍ତି । ତେଣୁ ତାକୁ ଏପରି କିଛି କରିବାକୁ କହିବା, ଯାହାକି କୌଣସି ଦେବତା ସୁଦ୍ଧା କରି ପାରିବେ ନାହିଁ ।" ଉଭୟଙ୍କ ପରା-

ମର୍ଶରେ ସ୍ଥିର ହେଲା, ଏଥର ଧର୍ମଧ୍ୱଜକୁ କୁହାଯିବ, ସେ ଉଦ୍ୟାନର ରକ୍ଷା ପାଇଁ ଜଣେ ଚତୁର୍ଗୁଣ ସମନ୍ୱିତ ରକ୍ଷକ ଆଣିଦେଉ । ଏପରି ଲୋକ କୌଣସି ଦେବତା ମଧ୍ୟ ଜନକରେ ସୃଷ୍ଟି କରିପାରିବେ ନାହିଁ । ତେଣୁ ତାକୁ ବଧ କରିବାର ଉପାୟ ମିଳିଯିବ ।"

ରାଜା ତାହାହିଁ କହିଲେ । ରାଜାଦେଶ ଶୁଣି ବୋଧିସତ୍ତ୍ୱ ନିର୍ଲିପ୍ତ ଭାବରେ କହିଲେ, "ସମ୍ଭବପର ହେଲେ ଆପଣଙ୍କୁ ଗୋଟିଏ ଉପଯୁକ୍ତ ଉଦ୍ୟାନରକ୍ଷକ ଯୋଗାଇଦେବ ।"

ବୋଧିସତ୍ତ୍ୱ ସେଦିନ ରାତିରେ ଭୋଜନ ପରେ ଶୟନ କରିବାକୁ ଗଲେ । ପ୍ରତ୍ୟୁଷରେ ନିଦ୍ରାଭଙ୍ଗ ହେବାରୁ ସେ ଶଯ୍ୟାରେ ବସି ଚିନ୍ତାକଲେ—ଶକ୍ର ମୋ ପ୍ରତି ଦୟାପରବଶ ହୋଇ ଯାହା ତାଙ୍କଦ୍ୱାରା ହୋଇପାରେ ତାହା କରିଅଛନ୍ତି । ଚତୁର୍ଗୁଣ ବିଶିଷ୍ଟ ଗୋଟିଏ ଉଦ୍ୟାନପାଳ ସୃଷ୍ଟି କରିବା ତାଙ୍କ ଶକ୍ତିର ଅତୀତ । ଏପରି ସ୍ଥଳରେ ମୋର ମୃତ୍ୟୁ ନିଶ୍ଚିତ; କିନ୍ତୁ ଦୁଷ୍ଟ ରାଜାର ଘାତକମାନଙ୍କ ହାତରେ ପ୍ରାଣ ହରାଇବା ଅପେକ୍ଷା ବନରେ ଅନାହାରରେ ମରିବା ଶ୍ରେୟସ୍କର ।

ଏହିପରି ସ୍ଥିରକରି ସେ ସମସ୍ତଙ୍କ ଅଜ୍ଞାତସାରରେ ଗୃହରୁ ବାହାରି ନଗର ତ୍ୟାଗ କରିଗଲେ । କିଛିଦୂର ଯିବାପରେ ସେ ଗୋଟିଏ ବନପ୍ରଦେଶରେ ଉପସ୍ଥିତ ହେଲେ । ଗୋଟିଏ ବୃକ୍ଷମୂଳରେ ବସି ସେ ଧର୍ମ ବିଷୟରେ ଚିନ୍ତା କରିବାକୁ ଲାଗିଲେ । ଶକ୍ର ଏହା ଜାଣିପାରି ଜଣେ ଶବର ରୂପରେ ତାହାଙ୍କ ସମକ୍ଷରେ ଉପସ୍ଥିତ ହୋଇ କହିଲେ, "ମହାଶୟ, ଆପଣଙ୍କୁ ଦେଖିଲେ ମନେ ହେଉଛି, ଆପଣ ସୁଖରେ ଜୀବନ ଯାପନ କରୁଥିଲେହେଁ ଏକାକୀ ଏ ବନକୁ ଆସିଅଛନ୍ତି । ଆପଣଙ୍କ ଜୀବନରେ କି ବିପଦ ଉପସ୍ଥିତ ହେବାରୁ ବୃକ୍ଷମୂଳରେ ବସି ଅଶ୍ରୁତ୍ୟାଗ କରୁଅଛନ୍ତି ?"

ବୋଧିସତ୍ତ୍ୱ ଉତ୍ତର କଲେ, "ଆପଣଙ୍କର ଅନୁମାନ ଯଥାର୍ଥ ! ଜୀବନକୁ ସୁଖରେ ଅତିବାହିତ କରିବାର ସମସ୍ତ ସୁଯୋଗ ଥାଇ ମଧ୍ୟ ମୁଁ ବନରେ ଏକାକୀ ଦୁଃଖମୟ ଜୀବନ ଯାପନ କରିବାକୁ ଆସିଛି ।"

ଶକ୍ର ପୁଣି ପ୍ରଶ୍ନକଲେ, "ତୁମର ଦୁଃଖର କାରଣ କଅଣ ?" ଧର୍ମଧ୍ୱଜ ଉତ୍ତର କଲେ, "ରଜା ମୋତେ ଆଦେଶ ଦେଇଛନ୍ତି, ଜଣେ ଚତୁର୍ଗୁଣସମ୍ପନ୍ନ ଲୋକ ତାଙ୍କୁ ଯୋଗାଇ ଦେବ । ସେ ରାଜାଙ୍କ ଉଦ୍ୟାନରକ୍ଷକ କାର୍ଯ୍ୟ କରିବ । ଏପରି ଲୋକ ମିଳିବା ଅସମ୍ଭବ । ତେଣୁ ରଜା ମୋତେ ପ୍ରାଣଦଣ୍ଡ ଦେବେ । ଘାତକ ଦ୍ୱାରା ପ୍ରାଣ ହରାଇବା ଅପେକ୍ଷା ବନରେ ଉପବାସରେ ମରିବା ଭଲ ମନେ-କରି ମୁଁ ଏଠାକୁ ଆସି ଦୁଃଖରେ ବସିଛି ।"

ଏହା ଶୁଣି ଶକ୍ର ଅମୃତପ୍ରତ୍ୟୟ ଦେଇ କହିଲେ, "ତୁମେ ଏପରି ନିରାଶ ହେବାର କାରଣ ନାହିଁ । ମୁଁ ତୁମକୁ ସାହାଯ୍ୟ କରିବାକୁ ଆସିଛି । ତୁମପାଇଁ ପ୍ରମୋଦ ଉଦ୍ୟାନ, ସରୋବର, ମଣି ଏସବୁ ଦେଇଛି । ଅବଶ୍ୟ ଜଣେ ଚତୁର୍ଗୁଣ ବିଶିଷ୍ଟ ଉଦ୍ୟାନରକ୍ଷକ ସୃଷ୍ଟି କରିବା ମୋର ଶକ୍ତିର ଅତୀତ । କିନ୍ତୁ ଏପରି ଜଣେ ଲୋକ ଅଛି; ସେ ହେଉଛି, ଅଳଙ୍କାର ନିର୍ମାତା ଛତ୍ରପାଣି । ତୁମେ ତାଙ୍କୁ ନେଇ ରାଜାଙ୍କ ପାଖରେ ଉପସ୍ଥିତ କର ।"

ଶକ୍ର ଏହା କହି ଅନ୍ତର୍ହିତ ହୋଇଗଲେ । ଧର୍ମଧ୍ୱଜ ନଗରକୁ ଫେରିଯାଇ ଛତ୍ରପାଣିଙ୍କୁ ଭେଟି ପଚାରିଲେ, "ମୁଁ ଶୁଣିଛି, ତୁମେ ଚାରୋଟି ଗୁଣର ଅଧିକାରୀ । ଏହା ସତ୍ୟ କି ?" ଛତ୍ରପାଣି କହିଲେ, "ଏହା ସତ୍ୟ । କିନ୍ତୁ ଏ ବିଷୟ ସହିତ ତୁମର ସମ୍ବନ୍ଧ କଅଣ ?" ତହୁଁ ଧର୍ମଧ୍ୱଜ ରଜାଙ୍କ ଆଦେଶ ବିଷୟ ପ୍ରକାଶ କଲେ । ଛତ୍ରପାଣି ଧର୍ମଧ୍ୱଜଙ୍କ ସହିତ ରାଜାଙ୍କ ନିକଟରେ ଉପସ୍ଥିତ ହୁଅନ୍ତେ, ଧର୍ମଧ୍ୱଜ

କହିଲେ, "ମହାରାଜ ଏହି ମହାପୁରୁଷ ଆପଣଙ୍କର ଉଦ୍ୟାନରକ୍ଷକ ପଦପାଇଁ ଉପଯୁକ୍ତ ।" ରାଜା ଛତ୍ରପାଣିଙ୍କୁ ପଚାରିଲେ, "ତୁମର ଚାରିଟି ଗୁଣ କଅଣ ।" ଛତ୍ରପାଣି ଉତ୍ତର କଲେ, "ମୁଁ କାହାରିକୁ ଈର୍ଷାକରେ ନାହିଁ; ମଦ ପାନ କରେନାହିଁ; ମୋର କୌଣସି କାମନା ନାହିଁ ଓ ମୋର କ୍ରୋଧ ନାହିଁ ।"

କ କ ପରିସ୍ଥିତିରେ ସେ ଏହି ଗୁଣଗୁଡ଼ିକ ଶିକ୍ଷା କରିଥିଲେ ତାହା ମଧ୍ୟ ସେ ବର୍ଣ୍ଣନା କଲେ । ରାଜା ଏଥିରେ ସନ୍ତୁଷ୍ଟ ହେଲେ ।

ଏଥିମଧ୍ୟରେ ମନ୍ତ୍ରୀ, ରାଜକର୍ମଚାରୀ ଓ ଜନସାଧାରଣ ଶୁଣି-ପାରିଥିଲେ ଯେ କାଳକର ପରାମର୍ଶରେ ରାଜା ଧର୍ମଧ୍ୱଜଙ୍କୁ ଯାହା ଯାହା କରିବାକୁ ଆଦେଶ ଦେଇଥିଲେ, ସେ ସେସବୁ କରିଅଛନ୍ତି । ଏବେ ରାଜା ନିଜେ ଜାଣିପାରିଲେ ଯେ ଧର୍ମଧ୍ୱଜ ପ୍ରକୃତରେ ସାଧୁ ପ୍ରକୃତିର ଲୋକ; କାଳକ ତାଙ୍କ ବିରୁଦ୍ଧରେ ମିଥ୍ୟା ଅଭିଯୋଗ କରୁଥିଲା । ରାଜାଙ୍କଠାରୁ ସୂଚନା ପାଇଲା ମାତ୍ରେ ସମସ୍ତେ ଚିତ୍କାର କଲେ, "କାଳକର ଅନ୍ୟାୟ ଉପାର୍ଜନ ବନ୍ଦ ହୋଇଯିବାରୁ ସେ ଧର୍ମଧ୍ୱଜଙ୍କୁ ବଧ କରିବାର ଉଦ୍ୟମ କରୁଥିଲା ।" ସେମାନେ କାଳକକୁ ପ୍ରହାର କରି କରି ନଗରର ବାହାରକୁ ନେଇଗଲେ । ଏହି ପ୍ରହାର ଫଳରେ ତାର ମୃତ୍ୟୁ ହେଲା । ଲୋକେ ତାର ଶବକୁ ଘୃଣା ସହକାରେ ଦୂରରେ ଫିଙ୍ଗିଦେଲେ ।

ରାଜା ଯଶପାଣି ଧର୍ମଧ୍ୱଜଙ୍କ ପରାମର୍ଶରେ ରାଜ୍ୟଶାସନ କରିବାକୁ ଲାଗିଲେ । ✳✳✳

## ବୀରକ ଜାତକ

ରାଜା ବ୍ରହ୍ମଦତ୍ତ ବାରଣସୀରେ ରାଜତ୍ୱ କରୁଥିବା ସମୟରେ ଥରେ ବୋଧିସତ୍ତ୍ୱ ସେହି ବାରଣସୀରେ ବୀରକ ନାମରେ ଏକ ପାଣିକୁଆ-ରୂପରେ ଜନ୍ମଗ୍ରହଣ କରିଥିଲେ । ସେ ଗୋଟିଏ ପୁଷ୍କରିଣୀ ତୀରରେ ବାସ କରୁଥିଲେ । ଏହି ସମୟରେ ରାଜ୍ୟରେ ଭୟାନକ ଦୁର୍ଭିକ୍ଷ ଉପସ୍ଥିତ ହେଲା । ଲୋକେ ଖାଦ୍ୟାଭାବରେ ବଡ଼ କଷ୍ଟ ପାଇବାକୁ ଲାଗିଲେ । ନିଜେ ଖାଇବାକୁ ପାଉ ନଥିବାବେଳେ ଲୋକେ କାକବଳି, ଭୂତବଳି ପ୍ରଭୃତି ଦେବେ କିପରି ? କାକମାନେ ଖାଇବାକୁ ନ ପାଇ ଲୋକାଳୟ ଛାଡ଼ି ବନକୁ ପଳାଇଗଲେ ।

ବାରଣସୀରେ ସବିଷ୍ଠକ ନାମରେ ଆଉ ଗୋଟିଏ କାକ ଥିଲା । ସେ ଖାଦ୍ୟାଭାବବଶତଃ ନଗର ତ୍ୟାଗ କରି ବୀରକଙ୍କ ନିକଟରେ ଅନ୍ୟ ଏକ ବୃକ୍ଷରେ ସସ୍ତ୍ରୀକ ବାସ କରିବାକୁ ଲାଗିଲା । ବୋଧିସତ୍ତ୍ୱ ପୁଷ୍କରିଣୀ ଜଳରେ ବୁଡ଼ି ସେଥିରୁ ମତ୍ସ୍ୟ ପ୍ରଭୃତି ଖାଦ୍ୟ ସଂଗ୍ରହ କରୁଥିଲେ । ଉଦରପୂର୍ତ୍ତି କଲାପରେ ସେ ଜଳରୁ ବାହାରି ତୀରକୁ ଆସୁଥିଲେ । ତାଙ୍କୁ ଦେଖି ସବିଷ୍ଠକ ଚିନ୍ତା କଲା, "ବୀରକ ପୁଷ୍କରିଣୀରୁ ବହୁତ ମତ୍ସ୍ୟ ଧରି ନିଜର ପକ୍ଷ ତଳେ ରଖୁଥିବ । ତାହାକୁ ସନ୍ତୁଷ୍ଟ କରିପାରିଲେ ମୁଁ ମଧ୍ୟ ଯଥେଷ୍ଟ ମତ୍ସ୍ୟ ଖାଇବାକୁ ପାଇ ପାରିବି ।"

ଏହିପରି ବିଚାରି ହିନେ ସେ ବୋଧିସତ୍ତ୍ୱଙ୍କୁ କହିଲା, "ମୁଁ ଆପଣଙ୍କର ଭୃତ୍ୟ ହୋଇ ରହିବି ।"

ବୋଧିସତ୍ତ୍ୱ ଏଥିରେ ସ୍ୱୀକୃତ ହେଲେ । ସେହିଦିନଠାରୁ ସବିଷ୍ଠକ ବୋଧିସତ୍ତ୍ୱଙ୍କର ସେବା କରିବାକୁ ଲାଗିଲା । ବୋଧିସତ୍ତ୍ୱ ପୁଷ୍କରିଣୀ ଜଳରେ ପ୍ରବେଶ କରି ନିଜେ ମତ୍ସ୍ୟ ଭକ୍ଷଣ କରୁଥିଲେ;

ତପୃତରେ ସେ ଯାହା ଧରୁଥିଲେ ତାହା ସବଝ୍‌ଠକକୁ ଦେଉଥିଲେ । ଓସଥିରେ ସେ ନିଜର ଉଦରପୂରଣ କରୁଥିଲା ଓ ଅବଶିଷ୍ଟ ନେଇ ତାର ସ୍ତ୍ରୀକୁ ଦେଉଥିଲା ।

ଏହିପରି କିଛିଦିନ ଗଲା । ଏଥିମଧ୍ୟରେ ସବଝ୍‌ଠକ ଭାବିଲା, ମୁଁ ଏ ପାଣିକୁଆଠାରୁ କେଉଁ ଗୁଣରେ ହୀନ ଯେ ମୁଁ ତାର ସେବକ ହୋଇ, ତାର ଅଇଁଠା ଖାଇ ରହିଥିବ ? ସେ ବର୍ଣ୍ଣରେ ଯେପରି କଳା, ମୁଁ ମଧ୍ୟ ସେହିପରି । ତାର ଆଖି, ଚଞ୍ଚୁ ଓ ପାଦ ଯେଉଁପରି, ମୋର ଆଖି, ଚଞ୍ଚୁ ଓ ପାଦ ଠିକ୍ ସେହିପରି; କିଛିହେଲେ ପ୍ରଭେଦ ନାହିଁ । କେଉଁ ଗୁଣରେ ସେ ମୋଠାରୁ ବଡ଼ ଯେ ମୁଁ ତା ଉପରେ ନିର୍ଭର କରି ରହିବ ? ନା, ଏଣିକ ମୁଁ ନିଜେ ମାଛ ଧରି ଖାଇବ ଓ ମୋର ସ୍ତ୍ରୀକୁ ଦେବ ।”

ଏହିପରି ବିଚାର କରି ଦିନେ ସେ ବାରକଙ୍କୁ କହିଲା, “ଭବିଷ୍ୟତରେ ମୁଁ ତୁମ ଉପରେ ନିର୍ଭର ନ କରି ନିଜେ ପୁଷ୍କରିଣୀରୁ ମାଛ ଧରି ଖାଇବ ।”

ତାହା ଶୁଣି ବାରକ କହିଲେ, “ତୁମେ ଭୁଲ ବୁଝିଛ, ଭାଇ ! ତୁମେ ପାଣିକୁଆଠାରୁ ଭିନ୍ନ; ପାଣିରେ ବୁଡ଼ି ମାଛ ଧରିବା ଜାତିରେ ତୁମର ଜନ୍ମ ନୁହେଁ । ପାଣିକୁଆପରି ହେବାକୁ ଯାଇ ପାଣିରେ ବୁଡ଼ିଲେ ବୃଥା ଜୀବନଟି ହରାଇବା ସାର ହେବ । ସେଭଳି ଅପଚେଷ୍ଟା କର ନାହିଁ ।”

ଯେତେ କହିଲେ ସୁଦ୍ଧା ସବଝ୍‌ଠକ ବାରକଙ୍କର କଥା ଶୁଣିଲା ନାହିଁ । ମାଛ ଧରିବାପାଇଁ ସେ ପାଣିରେ ପଶିଲା ମାତ୍ରକେ ତଳକୁ ତଳକୁ ଗଲା ଓ ଦଳ ଶିଉଳିରେ ଛନ୍ଦ ହୋଇ ପଡ଼ିଲା । ସେ ଆଉ ପାଣି ଉପରକୁ ଉଠିପାରିଲା ନାହିଁ । ଆସ୍ତେ ଆସ୍ତେ ସେ ପାଣି ତଳକୁ ଯାଇ ବୁଡ଼ିମଲା ।

ସନ୍ଧ୍ୟା ହୋଇ ଆସିଲା । ସ୍ୱାମୀ ବସାକୁ ନ ଫେରିବାରୁ କାକର ସ୍ତ୍ରୀ ଶାରକଙ୍କ ନିକଟକୁ ଯାଇ ପଚାରିଲା, ଆଜ ଏତେବେଳଯାଏ ମୋ ସ୍ୱାମୀ କାହିଁକି ବସାକୁ ଫେରିଲେ ନାହିଁ । ସେ ଏଠାରେ ନାହାନ୍ତି । ତେବେ କୁଆଡ଼େ ଗଲେ ?"

ବୋଧିସତ୍ତ୍ୱ ଉତ୍ତର କଲେ, "ସେ କୁଆଡ଼େ ଗଲେ ତାହା ମୁଁ ଜାଣେ । ବିଧାତା ତାଙ୍କୁ ପାଣିକୁଆ କରି ଜନ୍ମ ଦେଇ ନ ଥିଲା । କିନ୍ତୁ ସେ ପାଣିକୁଆପରି ପାଣିରେ ବୁଡ଼ି ମାଛ ଧରିବାକୁ ମନ କଲେ । ମୁଁ ଯେତେ କହିଲେ ସୁଦ୍ଧା ମୋର ମନା ମାନିଲେ ନାହିଁ । ଯେ ଯାହା କରିବାକୁ ଜନ୍ମ ହୋଇନାହିଁ, ସେ ତାହା କରିବାକୁ ଗଲେ ଫଳ ବିଷମୟ ହୋଇଥାଏ । ତୁମ ପତି ମାଛ ଧରି ଆଣିବା ଦୂରେ ଥାଉ, ନିଜକୁ ମଧ୍ୟ ରକ୍ଷା କରିପାରିଲେ ନାହିଁ । ପାଣି ଭିତରେ ଦଳରେ ଛନ୍ଦି ହୋଇ ସେ ବୁଡ଼ି ମରିଛନ୍ତି ।"

କାକୀ ଏହା ଶୁଣି ଦୁଃଖରେ କାନ୍ଦି କାନ୍ଦି ନିଜ ବାସସ୍ଥାନକୁ ଫେରିଗଲା ।

***

## ଅସଦୃଶ ଜାତକ

ଏକ ସମୟରେ ବୋଧିସତ୍ତ୍ୱ ବାରଣସୀର ରାଜା ବ୍ରହ୍ମଦତ୍ତଙ୍କ ପଟ୍ଟମହିଷୀଙ୍କ ଗର୍ଭରୁ ତାଙ୍କର ପ୍ରଥମ ପୁତ୍ରରୂପେ ଜନ୍ମଗ୍ରହଣ କରିଥିଲେ । ନବଜାତ ପୁତ୍ରଟିର ସୌନ୍ଦର୍ଯ୍ୟ ଅତୁଳନୀୟ ଥିଲା । ତାଙ୍କ ସଦୃଶ ସୁନ୍ଦର ଶିଶୁ ଦେଖା ନ ଥିବାରୁ ତାଙ୍କର ନାମ ରଖାଯାଇଥିଲା ଅସଦୃଶକୁମାର । କ୍ରମେ ଶିଶୁଟି ବୃଦ୍ଧି ପ୍ରାପ୍ତ ହୋଇ ପିତାମାତା-

ଙ୍କର ମନୋହରଣ କରିବାକୁ ଲାଗିଲା । ଶିଶୁଟିର ବୟସ ସୃରିବର୍ଷ ହେଲାବେଳକୁ ରାଣୀ ଅନ୍ୟ ଏକ ପୁତ୍ରରତ୍ନ ଲାଭ କଲେ । ଏହି ଦ୍ୱିତୀୟ ପୁତ୍ରର ନାମ ହେଲା ବ୍ରହ୍ମଦତ୍ତକୁମାର ।

ଅସଦୃଶ ଷୋଡ଼ଶ ବର୍ଷରେ ପଦାର୍ପଣ କରନ୍ତେ ବ୍ରହ୍ମଦତ୍ତ ତାହାଙ୍କୁ ଅଧ୍ୟୟନ ନିମନ୍ତେ ତକ୍ଷଶିଳାକୁ ପ୍ରେରଣ କଲେ । ସେଠାରେ ସେ ଜଣେ ବିଶ୍ୱ-ବିଖ୍ୟାତ ଆଚାର୍ଯ୍ୟଙ୍କୁ ଗୁରୁପଦରେ ବରଣ କରି ତାଙ୍କଠାରୁ ବେଦ, ଧର୍ମଶାସ୍ତ୍ର ଓ ମନ୍ତ୍ରଶାସ୍ତ୍ରମାନ ଶିକ୍ଷା କଲେ । ଏହା ସଙ୍ଗେ ସଙ୍ଗେ ସେ ଗୁରୁଙ୍କଠାରୁ ଧନୁର୍ବିଦ୍ୟା ମଧ୍ୟ ଶିକ୍ଷାକରି ସେଥିରେ ଅସାଧାରଣ ଦକ୍ଷତା ଅର୍ଜ୍ଜନ କଲେ । ଏହିପରି ନାନାଗୁଣରେ ବିଭୂଷିତ ହୋଇ ସେ ବାରାଣସୀକୁ ଫେରିଆସିଲେ ।

ରାଜା ବ୍ରହ୍ମଦତ୍ତଙ୍କର ମୃତ୍ୟୁକାଳ ନିକଟ ହେବାରୁ ସେ ପାତ୍ର-ମନ୍ତ୍ରୀ ପ୍ରଭୃତିଙ୍କୁ ଡକାଇ କହିଲେ, "ମୋ ଅନ୍ତେ ମୋର ଜ୍ୟେଷ୍ଠପୁତ୍ର ଅସଦୃଶ କୁମାର ବାରାଣସୀ ରାଜସିଂହାସନରେ ଆସୀନ ହେବେ ଓ କନିଷ୍ଠ ବ୍ରହ୍ମଦତ୍ତକୁମାର ରାଜପ୍ରତିନିଧି ପଦରେ ନିଯୁକ୍ତ ରହିବ । ମୋର ଆଶା, ଏହାଦ୍ୱାରା ଉଭୟେ ସୁଖରେ ରହି ପ୍ରଜାମାନଙ୍କୁ ମଧ୍ୟ ସୁଖ ଶାନ୍ତିରେ ରଖି ପାରିବେ ।" ଏହାର ଦିନେ ଦୁଇ ଦିନ ପରେ ବ୍ରହ୍ମଦତ୍ତଙ୍କର ମୃତ୍ୟୁ ହେଲା । ପାତ୍ରମନ୍ତ୍ରୀମାନେ ଅସଦୃଶ କୁମାରଙ୍କୁ ରାଜପଦରେ ଅଭିଷିକ୍ତ କରିବାର ଅଭିଳାଷ ପ୍ରକାଶ କଲେ । କିନ୍ତୁ ସେ ସିଂହାସନରେ ବସିବାକୁ ଅନିଚ୍ଛା ପ୍ରକାଶ କରି କହିଲେ, "ରାଜପଦପ୍ରତି ମୋର ଲବମାତ୍ର ଆସକ୍ତି ନାହିଁ । ମୁଁ ଯଶ ବା କ୍ଷମତାର ଲାଳସା ରଖିନାହିଁ । ତେଣୁ ରାଜସିଂହାସନରେ ବସିବାଦ୍ୱାରା ମୁଁ ସୁଖଶାନ୍ତି ପାଇବି ବୋଲି ମନେ କରୁନାହିଁ । ଅତଏବ ତୁମେମାନେ ବ୍ରହ୍ମଦତ୍ତକୁମାରଙ୍କୁ ସିଂହାସନରେ ବସାଅ ।" ପାତ୍ର-ମନ୍ତ୍ରୀମାନେ ବାଧ୍ୟହୋଇ ବ୍ରହ୍ମଦତ୍ତକୁମାରଙ୍କର ଅଭିଷେକ ସମ୍ପାଦନ

କରି ତାଙ୍କୁ ରାଜସିଂହାସନରେ ବସାଇଲେ; ତାହା ସଙ୍ଗେ ସଙ୍ଗେ ଅସଦୃଶକୁମାର ଯେପରି ରାଜୋଚିତ ସୁଖସ୍ୱାଚ୍ଛନ୍ଦ୍ୟ ଉପଭୋଗ କରି ପାରିବେ ସେଥିର ବ୍ୟବସ୍ଥା କରିଦେଲେ ।

ବ୍ରହ୍ମଦତ୍ତକୁମାର ସିଂହାସନରେ ବସି ରାଜ୍ୟଶାସନ କରିବାକୁ ଲାଗିଲେ । ସେ ବହୁ କର୍ମଚାରୀ ଓ ଦାସଦାସୀଙ୍କ ଦ୍ୱାରା ପରିବେଷ୍ଟିତ ରହୁଥିଲେ । କେତେକ ତୋଷାମୋଦକାରୀ ତାଙ୍କୁ ଅସଦୃଶକୁମାରଙ୍କ ବିରୁଦ୍ଧରେ ଉତ୍ତେଜିତ କରିବାକୁ ଆରମ୍ଭ କଲେ । ସେମାନେ କହିଲେ, "ମହାରାଜ ! ଆପଣଙ୍କ ବଡ଼ଭାଇ ପ୍ରକୃତରେ ରାଜା ହେବାକୁ ଇଚ୍ଛା କରୁଛନ୍ତି । ଦିନେ କେବେ ସେ ଆପଣଙ୍କ ବିରୁଦ୍ଧରେ ଉଠି ରାଜ୍ୟ ଅଧିକାର କରିବେ । ଏହି ଉଦ୍ଦେଶ୍ୟରେ ନଗର ଲୋକ-ମାନଙ୍କୁ ସେ ହାତ କରିବାରେ ଲାଗିଛନ୍ତି ।" ବ୍ରହ୍ମଦତ୍ତକୁମାର ଏହି କଥାକୁ ବିଶ୍ୱାସ କରି ରାଜପଦକୁ ନିରାପଦ କରିବା ନିମନ୍ତେ ଅସଦୃଶ-କୁମାରଙ୍କୁ ବନ୍ଦୀ କରିବାକୁ ସ୍ଥିର କଲେ । ସେ କେତେଜଣ ବିଶ୍ୱସ୍ତ ଭୃତ୍ୟଙ୍କୁ ଏହି ଉଦ୍ଦେଶ୍ୟରେ ପ୍ରେରଣ କଲେ ।

ଦୈବାତ୍ ଅସଦୃଶ କୁମାରଙ୍କର ଜଣେ ଭୃତ୍ୟ ଏହା ଜାଣିପାରି ତାଙ୍କୁ କହିଲା, "ଆପଣଙ୍କୁ ବନ୍ଦୀ କରିବାର ବ୍ୟବସ୍ଥା ହୋଇସାରିଛି । ପରେ ହୁଏତ ଆପଣଙ୍କର ପ୍ରାଣନାଶ କରାଯାଇପାରେ । ଆପଣ ସ୍ୱେଚ୍ଛାରେ ରାଜ୍ୟ ତ୍ୟାଗ କରିଥିଲେ; ତଥାପି ଆପଣଙ୍କ ସାନଭାଇ ଆପଣଙ୍କୁ ସନ୍ଦେହ କରୁଛନ୍ତି । ଅତଏବ ଏପରି ସ୍ଥାନରେ ରହିବା ଆପଣଙ୍କ ପକ୍ଷରେ ବିପଜ୍ଜନକ । ଶୀଘ୍ର ନିରାପଦ ସ୍ଥାନକୁ ପଳାୟନ କରନ୍ତୁ ।"

ଅସଦୃଶକୁମାର ଏହି ସମ୍ବାଦର ସତ୍ୟତା ଜାଣିପାରି ଅତିଶୀଘ୍ର ବାରାଣସୀ ରାଜ୍ୟ ତ୍ୟାଗ କରି ଅନ୍ୟ ଏକ ରାଜ୍ୟରେ ଉପସ୍ଥିତ ହେଲେ । ସେ ଉକ୍ତ ରାଜ୍ୟର ରାଜାଙ୍କ ନିକଟକୁ ଯାଇ ତାଙ୍କ ନିକ-

ଟରେ କର୍ମପ୍ରାର୍ଥୀ ହେଲେ । ରାଜା ପଚାରିଲେ, "ତୁମେ କି କାର୍ଯ୍ୟ କରିପାରିବ ?" ଅସଦୃଶକୁମାର କହିଲେ, "ମୁଁ ଧନୁର୍ବିଦ୍ୟା ଜାଣେ। ଧନୁଶର ଦ୍ୱାରା ଯାହା କିଛି କରାଯାଇ ପାରିବ, ମୁଁ ତାହା କରିବ ।" ରାଜା ପୁଣି ପଚାରିଲେ, "ତୁମେ କେତେ ବେତନ ନେବ ?" ଅସଦୃଶ କୁମାର ଉତ୍ତର କଲେ, "ବର୍ଷକୁ ଏକଲକ୍ଷ ମୁଦ୍ରା ।"

ରାଜା ଅସଦୃଶ କୁମାରଙ୍କ ରୂପ ଓ ଶରୀରଗଠନ ଦେଖି ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ । ତେଣୁ ସେ ତାଙ୍କୁ ନିଯୁକ୍ତ କଲେ । ରାଜାଙ୍କର ଅନ୍ୟ ଧନୁର୍ଦ୍ଧରମାନେ ଏହି ନିଯୁକ୍ତିରେ ଅସନ୍ତୁଷ୍ଟ ହେଲେ । ସେମାନଙ୍କ ତୁଳନାରେ ନୂତନ ଧନୁର୍ଦ୍ଧରର ବେତନ ଅତ୍ୟନ୍ତ ଅଧିକ ଥିଲା । ସେମାନେ ରାଜାଙ୍କୁ କିଛି କହିପାରିଲେ ନାହିଁ ; କିନ୍ତୁ ମନେ ମନେ ଅସଦୃଶକୁମାରଙ୍କ ପ୍ରତି ଈର୍ଷା କରିବାକୁ ଲାଗିଲେ ।

ଦିନେ ରାଜା ଉପବନରେ ଭ୍ରମଣ କରିବାକୁ ଯାଇଥିଲେ । ଗୋଟିଏ ଆମ୍ବଗଛମୂଳରେ ପ୍ରସ୍ତରନିର୍ମିତ ବେଦୀ ଉପରେ ରାଜାଙ୍କର ଆସନ ପଡ଼ିଥିଲା ଓ ମସ୍ତକ ଉପରେ ଚନ୍ଦ୍ରାତପ ଶୋଭା ପାଉଥିଲା । କିଛି ସମୟ ଭ୍ରମଣ କଲାପରେ ରାଜା ସେହି ଆସନରେ ଉପବେଶନ କଲେ । ସେ ଊର୍ଦ୍ଧ୍ୱକୁ ଦୃଷ୍ଟିପାତ କରି ଦେଖିଲେ ଯେ ବୃକ୍ଷଟିର ଅଗ୍ରଭାଗରେ ଗୋଟିଏ ପେନ୍ଥା ଆମ୍ବ ରହିଅଛି । ସେ ଏହାକୁ ନେବାପାଇଁ ଇଚ୍ଛା କଲେ; କିନ୍ତୁ ଏତେ ଉଚ୍ଚକୁ ଚଢ଼ି ଅଗ୍ରଭାଗରୁ କେହି ପେନ୍ଥାଟିକୁ ଆଣିବାର ସମ୍ଭାବନା ନଥିଲା । ତେଣୁ ସେ ତାଙ୍କର ଧନୁର୍ଦ୍ଧରମାନଙ୍କୁ କହିଲେ, "ତୁମମାନଙ୍କ ମଧ୍ୟରୁ କେହି ଶର ମାରି ଏହି ଆମ୍ବ ପେନ୍ଥାଟି ତଳକୁ ଆଣି ମୋତେ ଦେଇପାରିବ ?" ସେମାନେ ଉତ୍ତରକଲେ, "ମହାରାଜ ! ଏହା ଅତି ସହଜ କାର୍ଯ୍ୟ । ଯେକୌଣସି ଧନୁର୍ଦ୍ଧର ଏହା କରି ପାରିବ । ଆପଣ ବହୁବାର ଆମର ଶର ମାରିବା କୌଶଳ ଦେଖିଅଛନ୍ତି । ତେଣୁ ଏହି ଆମ୍ବ-

ସେନ୍ଥାଟି ତଳକୁ ଆସିବାର ଭାର ଆପଣଙ୍କ ନୂତନ ଧନୁର୍ଦ୍ଧର ଉପରେ ନ୍ୟସ୍ତ କରାଯାଉ । ସେ ଆମମାନଙ୍କ ଅପେକ୍ଷା ଅଧିକ ବେତନ ପାଆନ୍ତି । ଆପଣ ଏହାଦ୍ୱାରା ତାଙ୍କ ଯୋଗ୍ୟତାର ପ୍ରମାଣ ମଧ୍ୟ ପାଇପାରିବେ ।"

ସେମାନଙ୍କର ପ୍ରସ୍ତାବଟିକୁ ଯୁକ୍ତିଯୁକ୍ତ ମନେକରି ରାଜା ଅସଦୃଶକୁମାରଙ୍କୁ ଡକାଇ ନିଜର ଅଭିଳାଷ ଜଣାଇଲେ । ତହୁଁ ସେ କହିଲେ, "ମୁଁ ଆମ୍ବ ପେନ୍ଥାଟିକୁ ଶରମାରି ନେଇଆସିବି; କିନ୍ତୁ ମୋର ଇଚ୍ଛା ଅନୁସାରେ ମୁଁ ସ୍ଥାନ ସ୍ଥିର କରି ଶର ମାରିବି ।"

ରାଜା ପଚାରିଲେ, "ତୁମେ କେଉଁ ସ୍ଥାନରେ ରହିବାକୁ ଚାହଁ ?" ଅସଦୃଶ ରାଜାଙ୍କ ଆସନ ପଡ଼ିଥିବା ସ୍ଥାନଟି ଦେଖାଇ ଦେଲେ । ତହୁଁ ବୃକ୍ଷମୂଳରୁ ଚନ୍ଦ୍ରାତପ ସହିତ ରାଜାଙ୍କ ଆସନ ଉଠାଇ ନିଆଗଲା ।

ଅସଦୃଶଙ୍କ ହାତରେ ଧନୁ ନ ଥିବାର ଦେଖି ରାଜା ବିସ୍ମିତ ହୋଇ ପଚାରିଲେ, "ତୁମର ଧନୁଶର କାହିଁ ?" ଉତ୍ତର ମିଳିଲା, "ମହାରାଜ ! ମୋର ଧନୁ ଓ ଶରମୁଣା ସର୍ବଦା ମୋ ନିକଟରେ ଥାଏ । କିନ୍ତୁ ମୁଁ ତାହାକୁ ମୋ ବହିରାବରଣ ତଳେ ରଖିଥାଏଁ ।" ଏହା କହି ସେ ଟିକିଏ ଅନ୍ତରାଳକୁ ଚାଲିଗଲେ ଓ ବହିରାବରଣ ତଳ୍ବ ବିଭିନ୍ନ ଅଂଶକୁ ଯୋଡ଼ି ଧନୁଟିକୁ ପ୍ରସ୍ତୁତ କଲେ । ସେ ଗୋଟିଏ ରକ୍ତ ବର୍ଣ୍ଣର ପୋଷାକ ପିନ୍ଧି, କଟିରେ ତରବାରି ଲମ୍ବାଇ ଓ ପିଠିରେ ଶରମୁଣା ପକାଇ ପୁନର୍ବାର ରାଜାଙ୍କ ସମକ୍ଷରେ ଉପସ୍ଥିତ ହେଲେ । ଏହି ବେଶରେ ଆସିଲାବେଳେ ମନେହେଲା ସତେ ଅବା ପାତାଳପୁରରୁ ନାଗରାଜା ବାହାରି ଆସୁଛନ୍ତି । ସେ ନିର୍ଦ୍ଦିଷ୍ଟ ସ୍ଥାନରେ ଧନୁଶର ଧରି ଛିଡ଼ାହୋଇ ପଚାରିଲେ, "ମହାରାଜ ! ଏବେ ଆଦେଶ କରନ୍ତୁ, ଆମ୍ବ ପେନ୍ଥାର ତଳୁ ଶର ମାରିବି କି ଉପରୁ ଶର ମାରିବି ?"

ଗଛର ମୂଳରେ ରହି ଫଳର ଉପରୁ କପରି ଶର ମରାଯାଇ ପାରିବ, ତାହା ରାଜାଙ୍କୁ ଆଶ୍ଚର୍ଯ୍ୟଜନକ ବୋଧହେଲା । ସେ କହିଲେ, "ତକ୍ଷ ଶରମାରି ଲକ୍ଷ୍ୟଭେଦ କରିବା ମୁଁ ଶତ ଶତବାର ଦେଖିଅଛି । ତୁମେ ଉପରୁ ଶରମାରି ଫଳ ପେଣ୍ଡାଟିକୁ ଆଣ ।" ତହୁଁ ଅସଦୃଶ କହିଲେ, "ମହାରାଜ, ମୋ ହାତରେ ଏହି ଶରଟି ସ୍ୱର୍ଗପୁର ପର୍ଯ୍ୟନ୍ତ ଯାଇ ଫେରି ଆସିବ । ତେଣୁ ଆପଣ ଟିକଏ ଧୈର୍ଯ୍ୟ ଧରି ଅପେକ୍ଷା କରିବା ହେବେ । ପ୍ରଥମେ ଶରଟି ଉପରକୁ ଉଠିଲାବେଳେ ଆମ୍ବ ଡେମ୍ଫର ଠିକ୍ କେନ୍ଦ୍ର ଭେଦକରି ଯିବ ; ଉପରୁ ଫେରି ଆସିଲାବେଳେ ମଧ୍ୟ ଠିକ୍ କେନ୍ଦ୍ର ଭେଦକରି ଆମ୍ବ-ପେଣ୍ଡାଟିକୁ ନେଇ ଆସିବ ।"

ରାଜା ଓ ଉପସ୍ଥିତ ଲୋକେ ଏହି ଅଦ୍ଭୁତ ଶରଚାଳନା ଦେଖିବାପାଇଁ ଆଗ୍ରହାନ୍ୱିତ ହୋଇ ରହିଁ ରହିଲେ । ଅସଦୃଶ ଗୋଟିଏ ଶର ମାରିଲେ, ତାହା ଅମ୍ବପେଣ୍ଡା ଡେମ୍ଫର ମଧ୍ୟଭାଗ ଭେଦ କରି ଉପରକୁ ଉଠିଲା; କ୍ରମେ ଏହା ଅଦୃଶ୍ୟ ହୋଇଗଲା । ଶରଟି ସ୍ୱର୍ଗରାଜ୍ୟରେ ପହଞ୍ଚିଥିବାର ଜାଣିପାରି ସେ ଆଉ ଗୋଟିଏ ଶର ନିକ୍ଷେପ କଲେ । ଏହା ଅନ୍ତରୀକ୍ଷ ଦୃତଗତିରେ ଯାଇ ପ୍ରଥମ ଶରଟିର ଗତିପଥକୁ ପରିବର୍ତ୍ତିତ କରିଦେଲା । ଦେବତାମାନେ ଏହି ଶରଟିକୁ ଧରି ରଖିଲେ ।

ଏଥର ଶରଟି ପୃଥିବୀ ଅଭିମୁଖରେ ଏତେ ବେଗରେ ଆସିଲା ଯେ ବଜ୍ରଧ୍ୱନି ପରି ଶବ୍ଦ ଶୁଣାଗଲା । ଲୋକେ ଭୀତଚକିତ ହୋଇ-ଗଲେ । ଅସଦୃଶ ସେମାନଙ୍କୁ ଆଶ୍ୱାସନା ଦେଇ କହିଲେ, "ଭୟର କିଛି କାରଣ ନାହିଁ । ଶରଟି ଆସୁଥିବାରୁ ଏ ଶବ୍ଦ ହେଉଅଛି । ଏହା କାହାରି ଉପରେ ପଡ଼ିବ ନାହିଁ । ପୃଥିବୀ ଉପରେ ପଡ଼ିବା ପୂର୍ବରୁ ମୁଁ ଏହାକୁ ଧରିନେବି ।"

ତାଙ୍କର କଥା କାର୍ଯ୍ୟତଃ ପ୍ରମାଣିତ ହେଲା । ଶରଟି ଫେରିଲା-ବେଳେ ଡେମ୍ଫର ମଧ୍ୟଭାଗ ଭେଦକରି ଆମ୍ବପେଣ୍ଡାଟି ସହିତ ତଳକୁ ଖସିଲା ଓ ତାହା ଭୂମିରେ ପଡ଼ିବା ପୂର୍ବରୁ ଅସଦୃଶ ଗୋଟିଏ ହାତରେ ଶରଟିକୁ ଓ ଅନ୍ୟ ହାତରେ ଆମ୍ବ ପେଣ୍ଡାଟିକୁ ଧରିନେଲେ । ଏହି ଅଦ୍ଭୁତ ଶରଚାଳନା ଦେଖି ରାଜା ଓ ଦର୍ଶକବୃନ୍ଦ ମୁଗ୍ଧ ହୋଇ ତାଙ୍କର ଭୂୟସୀ ପ୍ରଶଂସା କଲେ । ଯେଉଁ ଧନୁର୍ଦ୍ଧରମାନେ ତାଙ୍କପ୍ରତି ଈର୍ଷା କରୁଥିଲେ, ସେମାନେ ମଧ୍ୟ ତାଙ୍କ ପ୍ରଶଂସାରେ ମୁଖର ହୋଇ ଉଠିଲେ । ରାଜା ତାଙ୍କୁ ଆଲିଙ୍ଗନ କରି ଏକକୋଟି ମୁଦ୍ରା ପୁରସ୍କାର ଦେଲେ । ଦର୍ଶକମାନେ ମଧ୍ୟ ନାନା ଉପହାର ଦେଲେ ।

ଅସଦୃଶକୁମାର ବାରାଣସୀ ତ୍ୟାଗକରି ଅନ୍ୟ ଏକ ରାଜ୍ୟରେ ରହି ପ୍ରଶଂସା ଲାଭ କରିଅଛନ୍ତି, ଏ ସମ୍ବାଦ ସମଗ୍ର ଭାରତରେ ପ୍ରଚାରିତ ହୋଇଗଲା । ସାତୋଟି ବିଭିନ୍ନ ରାଜ୍ୟର ରାଜା ଏକତ୍ର ମିଳିତ ହୋଇ ବିଚାର କଲେ, "ବାରାଣସୀ ରାଜ୍ୟ ବର୍ତ୍ତମାନ ନିତାନ୍ତ ଦୁର୍ବଳ । ଅସଦୃଶକୁମାର ସାନଭାଇ ଉପରେ ବିରକ୍ତ ହୋଇ ଅନ୍ୟ ରାଜ୍ୟରେ ଆଶ୍ରୟ ନେଇଅଛନ୍ତି । ତାଙ୍କ ବିନା ବ୍ରହ୍ମଦତ୍ତକୁମାର ଦେଶରକ୍ଷା କରିବାକୁ ଅସମର୍ଥ ହେବେ, ଏଥିରେ ସନ୍ଦେହ ନାହିଁ । ଏହି ସୁଯୋଗରେ ଆମେମାନେ ବାରାଣସୀ ରାଜ୍ୟ ଅଧିକାର କରି ଏହାର ଗୋଟିଏ ଗୋଟିଏ ଅଂଶ ନିଜ ନିଜ ରାଜ୍ୟ ସହିତ ମିଶାଇ ଦେବା ।" ସେମାନେ ବାରାଣସୀ ଅବରୋଧ କରି ରାଜାଙ୍କୁ ସମ୍ବାଦ ଦେଲେ, "ଆମମାନଙ୍କ ହସ୍ତରେ ବାରାଣସୀ ରାଜ୍ୟ ଅର୍ପଣ କର, ଅଥବା ଯୁଦ୍ଧକର ।"

ବ୍ରହ୍ମଦତ୍ତକୁମାର ଭୟରେ କାତର ହୋଇ ପଡ଼ିଲେ । ତାଙ୍କର ଧ୍ୱଂସ ଅନିବାର୍ଯ୍ୟ ମନେ କରି ସେ ବଡ଼ଭାଇଙ୍କର ଶରଣ ନେବାକୁ

ସ୍ଥିର କଲେ । ସେ ଜଣେ ଅନୁଚର ହସ୍ତରେ ଖଣ୍ଡିଏ ପତ୍ର ଭାଇଙ୍କ ନିକଟକୁ ପଠାଇଲେ । ସେ ଲେଖିଥିଲେ ।

"ଭାଇ,

ମୁଁ ତୁମ ନିକଟରେ ଘୋର ଅପରାଧ କରିଅଛି । ମୁଁ ତୁମକୁ ଅବିଶ୍ୱାସ କରି ବନ୍ଦୀ କରିବାକୁ ବସିଥିଲି । ସେଥିନିମନ୍ତେ ମୁଁ ଅନୁତାପ କରୁଛି । ଏବେ କେବଳ ମୋର ଜୀବନ ଯେ ବିପଦଗ୍ରସ୍ତ ତାହା ନୁହେଁ; ବାରାଣସୀ ରାଜ୍ୟ ବିପଦର ସମ୍ମୁଖୀନ । ତୁମେ ମହାନ୍ ଉଦାର । ମୋତେ କ୍ଷମା ଦେଇ ପୈତୃକ ରାଜ୍ୟ ଶତ୍ରୁମାନଙ୍କ ହସ୍ତରୁ ରକ୍ଷା କର ।"

ଅସଦୃଶକୁମାର ପତ୍ରଟି ପାଇଲାମାତ୍ରେ ରାଜାଙ୍କ ଅନୁମତି ନେଇ ବାରାଣସୀକୁ ଫେରିଆସିଲେ । ବ୍ରହ୍ମଦତ୍ତକୁମାର ତାଙ୍କର ପଦ ବନ୍ଦନା କଲେ । ଅସଦୃଶକୁମାର ସାନଭାଇଙ୍କର ସମସ୍ତ ଦୋଷ ଭୁଲିଯାଇ ଗୋଟିଏ ଶରରେ ଉତ୍ତର ଲେଖି ଶତ୍ରୁମାନଙ୍କ ପାଖକୁ ଫୋପାଇଦେଲେ । ସେଥିରେ ଲେଖାଥିଲା, "ପୈତୃକ ରାଜ୍ୟକୁ ରକ୍ଷା କରିବା ପାଇଁ ମୁଁ ବାରାଣସୀକୁ ଫେରିଆସିଛି । ତୁମେମାନେ ସଙ୍ଗେ ସଙ୍ଗେ ବାରାଣସୀ ତ୍ୟାଗ କରି ଚାଲି ନ ଗଲେ ଗୋଟିଏ ମାତ୍ର ଶରରେ ତୁମମାନଙ୍କର ବିନାଶ ସାଧନ କରିବି ।"

ସେତେବେଳକୁ ଶତ୍ରୁରାଜାମାନେ ଏକତ୍ର ବସି ପାନ-ଭୋଜନରେ ରତ ଥିଲେ । ଶରଟି ଆସି ସେମାନଙ୍କ ଭୋଜନପାତ୍ରରେ ପଡ଼ିଲା । ସେଥିରେ ଲେଖାଥିବା ସମ୍ବାଦଟି ପାଠ କରିବା ମାତ୍ରେ ସେମାନେ ପ୍ରାଣଭୟରେ ବାରାଣସୀ ସୀମା ଅତିକ୍ରମ କରି ପଳାଇ ଗଲେ । ଏହିପରି ବିନ୍ଦୁମାତ୍ର ରକ୍ତପାତ ନ କରି ଅସଦୃଶକୁମାର ରାଜ୍ୟକୁ ଶତ୍ରୁହସ୍ତରୁ ମୁକ୍ତ କଲେ । ସାନ ଭାଇ ତାଙ୍କୁ ରାଜସିଂହା-ସନରେ ବସିବାକୁ ଅନୁରୋଧ କଲେ, କିନ୍ତୁ ସେ ରାଜପଦର

ଅଭିଳାଷୀ ହ ଥିଲେ । ତେଣୁ ସେ ସଂସାରତ୍ୟାଗୀ ସନ୍ନ୍ୟାସୀଜୀବନ ଯାପନ କରି ଶେଷରେ ବ୍ରହ୍ମପଦ ଲାଭ କଲେ । ***

## ଦ୍ୱୀପ ଜାତକ

ଏକ ସମୟରେ ବୋଧିସତ୍ତ୍ୱ ମଗଧର ଗୋଟିଏ ଧନଶାଳୀ ପରିବାରରେ ଜନ୍ମଗ୍ରହଣ କରିଥିଲେ । ଧନୀକର ସନ୍ତାନ ହୋଇ-ଥିଲେହେଁ ସେ ବିଳାସ ବ୍ୟସନଠାରୁ ଦୂରରେ ରହୁଥିଲେ ଓ ସକଳ ପ୍ରକାର କାମନା ତ୍ୟାଗ କରି ତପସ୍ୟାରେ ନିଯୁକ୍ତ ରହୁଥିଲେ । ହିମାଳୟର ଏକ ଗହ୍ୱରରେ ଦୀର୍ଘକାଳ ତପସ୍ୟା କରିବା ପରେ ସେ ବଙ୍ଗଭୂଭିକୁ ଆସି ସେଠାରେ ଗୋଟିଏ ପତ୍ରକୁଟୀର ନିର୍ମାଣ କରି ସେଥିରେ ବାସ କରିବାକୁ ଲାଗିଲେ । ଏହି କୁଟୀରଟିର ଚତୁର୍ଦ୍ଦିଗ ପର୍ବତବେଷ୍ଟିତ ଥିଲା ଓ ବାହାରକୁ ଆସିବାପାଇଁ ଗୋଟିଏ ମାତ୍ର ଅପ୍ରଶସ୍ତ ପଥ ଥିଲା ।

ସେହି ପାର୍ବତ୍ୟ ଅଞ୍ଚଳରେ କେତେକ ଛାଗରକ୍ଷକ ସେମାନଙ୍କ ଛାଗଛାଗୀମାନଙ୍କୁ ଚରାଇବାକୁ ଆଣୁଥିଲେ । ସେମାନେ ଦେଖିଲେ କୁଟୀରର ଚତୁର୍ପାର୍ଶ୍ୱ ପର୍ବତ ବେଷ୍ଟିତ ହୋଇଥିବାରୁ ସେଠାରେ ଛାଗଦଳକୁ ରଖିବା ନିରାପଦ । ତେଣୁ ସେମାନେ ରାତିରେ ନିଜନିଜର ଛାଗଛାଗୀମାନଙ୍କୁ ସେଠାରେ ରଖିବାକୁ ଲାଗିଲେ । ଦିନବେଳା ସେମାନଙ୍କୁ ପର୍ବତ ଉପରେ ଚରିବାକୁ ଛାଡ଼ି ଦେଉ-ଥିଲେ । କିଛି ଦିନ ପରେ ଥରେ ସେମାନେ ସେ ଅଞ୍ଚଳ ତ୍ୟାଗ କରି ଅନ୍ୟତ୍ର ଯିବାକୁ ସ୍ଥିର କଲେ । ସମସ୍ତ ଛାଗ ଓ ଛାଗୀଙ୍କୁ ବାହାରକୁ

ନେଲବେଳେ ଦୈବାତ୍ ଗୋଟିଏ ଛୁଗୀ ପଛରେ ରହିଗଲ ଓ ଅନ୍ୟମାନେ ଚାଲିଗଲେ । ସେହି ଛୁଗୀଟି ଅନ୍ୟମାନଙ୍କର ଅନୁସରଣ କରିବା ଉଦ୍ଦେଶ୍ୟରେ ପଥଦ୍ୱାରରେ ପହଞ୍ଚିଲବେଳକୁ ଗୋଟିଏ ହେଟାବାଘକୁ ଦେଖିପାରିଲ । ହେଟାବାଘ ଯେ ତାହାକୁ ମାରି ଖାଇବ ବୋଲି ଦ୍ୱାରଦେଶରେ ଜଗି ରହିଛି, ଏ ବିଷୟରେ ତାର ସନ୍ଦେହ ରହିଲ ନାହିଁ । ଫେରିପଡ଼ି ପଳାଇଗଲେ ମଧ୍ଧ ତାର ରକ୍ଷା ପାଇ-ବାର ଆଶା ନଥିଲ, କାରଣ ହେଟାବାଘ ପଛରୁ ଧାଇ ତାକୁ ସହଜରେ ମାରିବାର ସମ୍ଭାବନା ଥିଲ । ସେ ଚିନ୍ତାକଲ—ଆଗକୁ ଗିବାରେ ଯେପରି ଫେରି ପଳାଇଲେ ମଧ୍ଧ ସେହିପରି ଜୀବନହାନିର ଆଶଙ୍କା ଅଛି । ଏପରି ସ୍ଥଳରେ ତାକୁ ମଧୁର କଥାରେ ସନ୍ତୁଷ୍ଟ କରି ଜୀବନ ରକ୍ଷାର ଉଦ୍ୟମ କରିବା ଉଚିତ । ଏହା ଭାବି ସେ ହେଟା-ବାଘକୁ କହିଲ, "ମାମୁ, ତୁମର ସବୁ କୁଶଳ ତ ! ମାଆ ମୋ ହାତରେ ତୁମକୁ ପ୍ରଣାମ ଜଣାଇଛନ୍ତି । ତୁମେ ଆମ ମାଆ ଝିଅଙ୍କର ଆଶ୍ରୟ ।"

ଏହା ଶୁଣି ହେଟାବାଘ ବିଗିଡ଼ିଲ, "ଏ ମୋତେ ମାମୁ, କହି ଭୁଲାଇ ଦେବାକୁ ବସିଛି । ମୁଁ ଏ ମିଠା କଥାରେ ଭୁଲିବା ପ୍ରାଣୀ ନୁହେଁ । ମୋର ପ୍ରକୃତ ରୂପ ଏ ଦେଖିନାହିଁ ।" ଏହିପରି ବିଗିଡ଼ି ସେ କହିଲ, "କଲେ, ତୋର ସାହସ ତ କମ୍ ନୁହେଁ ? ତୁ ମୋ ଲାଞ୍ଜକୁ ଦଳିଦେଇ ଯାଉଛୁ ? ତୁ ଭାବୁଛୁ ଯେ 'ମାମୁ' ବୋଲି ଡାକଦେଲେ ମୁଁ ତୋତେ ଛାଡ଼ିଦେବି ?"

ଛୁଗୀ ଖାତ ହୋଇ କହିଲ, "ମୁଁ ତୁମ ଲାଞ୍ଜ ଉପରେ ପାଦ ଦେଇଲି କିପରି ? ତୁମେ ମୋ ଆଗରେ ରହିଛ । ତୁମ ଲାଞ୍ଜ ତୁମ ପଛରେ ଅଛି । ତୁମ ଲାଞ୍ଜ ଉପରେ ମୋର ପାଦ ପଡ଼ିବା ଅସମ୍ଭବ ।"

ହେଟାବାଘ କହିଲା, "ତୁ କଅଣ କହିଲୁ ? ପୃଥିବୀରେ ଯେ-କୌଣସି ଜାଗାରେ ମୋର ଲାଞ୍ଜ ରହିପାରେ । ପୃଥିବୀରେ ଯେତେ ରାଜ୍ୟ ଅଛି, ଯେତେ ପାହାଡ଼ ପର୍ବତ ଅଛି, ଯେତେ ସମୁଦ୍ର ଅଛି, ସେ ସବୁଠାରେ ମୋର ଲାଞ୍ଜ ଅଛି । ତୁ ଯେଉଁଠାରେ ପାଦ ପକାଇଲେ, ମୋ ଲାଞ୍ଜ ଉପରେ ତାହା ପଡ଼ିବ ।"

ଏହା ଶୁଣି ଛୁଗୀ ବିଚାରିଲା, "ଏ ଦୁଷ୍ଟ ସହିତ ଯୁକ୍ତି କରିବା ବୃଥା । ମଧୁର କଥା କହି ଏହାର ମନ ବଦଳାଇ ହେବନାହିଁ । ମୁଁ ଜାଣିଥିଲି, ସେ ମୋର ଶତ୍ରୁ; ମୋର ପ୍ରାଣ ନେବା ତାର ଇଚ୍ଛା । ତେଣୁ ତାକୁ ଶତ୍ରୁ ପରି ବ୍ୟବହାର ଦେଖାଇବା ଉଚିତ । ଫଳ ଯାହା ହେବାର ହେଉ ।" ଏହା ଚିନ୍ତା କରି ସେ କହିଲା, "ତୋ ଭଳି ଦୁଷ୍ଟର ଲାଞ୍ଜ ଯେ ପୃଥିବୀସାରା ବ୍ୟାପିଥିବ, ସେ କଥା ମୋତେ ଜଣା । ମୋର ବାପମାଆ ମୋତେ ଏ ବିଷୟରେ ସାବଧାନ କରି ଦେଇଛନ୍ତି । ସେଥିପାଇଁ ମୁଁ ଆକାଶରେ ଉଡ଼ି ଉଡ଼ି ଆସିଛି ।"

ହେଟାବାଘ କହିଲା, "ହଁ, ତୁ ଉଡ଼ି ଉଡ଼ି ଆସିଛୁ ମୁଁ ସେ କଥା ଜାଣେ । କିନ୍ତୁ ତୋର ଏଇ ଉଡ଼ିଆସିବା ଯୋଗେ ମୋର ଆହାର ନଷ୍ଟ ହୋଇଯାଇଛି । ତୁ ଆକାଶରେ ଉଡ଼ିଆସିଲାବେଳେ ପଲେ ହରିଣ ତୋତେ ଦେଖି ପଳାଇଗଲେ । ମୁଁ ସେମାନଙ୍କୁ ଖାଇଥାନ୍ତି । ତେଣୁ ତୁ ମୋର ଆହାର ନଷ୍ଟ କରି ଦେଇଛୁ ।"

ଛୁଗୀ ଆଉ କଅଣ କହିବ, ଭାବିପାରିଲା ନାହିଁ । ପ୍ରାଣ ଭୟରେ କାତର ହୋଇ ସେ କହିଲା, "ମାମୁ, ଦୟା କରି ମୋତେ ମାରନାହିଁ । ମୋତେ ଛାଡ଼ିଦିଅ ।"

ହେଟାବାଘ ଛୁଗୀର କରୁଣ ପ୍ରାର୍ଥନା ଶୁଣିଲାନାହିଁ । ସେ ତାକୁ ମାଡ଼ିବସି ଖାଇଦେଲା । ଦୁଷ୍ଟ କି ତାର ପ୍ରକୃତି ଛାଡ଼ିପାରେ ? ***

## ସୁବର୍ଣ୍ଣହଂସ ଜାତକ

ଏକଦା ବ୍ରହ୍ମଦତ୍ତ ବାରାଣସୀରାଜ୍ୟରେ ରାଜତ୍ୱ କରୁଥିବା ସମୟରେ ବୋଧିସତ୍ତ୍ୱ ଏକ ବ୍ରାହ୍ମଣର ପୁତ୍ର ରୂପେ ଜନ୍ମିଥିଲେ । ବୟଃପ୍ରାପ୍ତ ହେବାରୁ ସେ ଜଣେ ବ୍ରାହ୍ମଣର କନ୍ୟାକୁ ବିବାହ କଲେ । କାଳକ୍ରମେ ତାଙ୍କର ତିନୋଟି କନ୍ୟା ଜାତହେଲେ । ସେମାନଙ୍କର ନାମ ଥିଲା ନନ୍ଦା, ନନ୍ଦାବତୀ ଓ ସୁନ୍ଦରୀନନ୍ଦା । ବୋଧିସତ୍ତ୍ୱ ଇହଧାମ ତ୍ୟାଗ କରିବାରୁ ପ୍ରତିବେଶୀ ଓ ବନ୍ଧୁମାନେ କନ୍ୟାମାନଙ୍କୁ ଲାଳନ-ପାଳନ କରିବାକୁ ଲାଗିଲେ । ବୋଧିସତ୍ତ୍ୱ ମୃତ୍ୟୁପରେ ଏକ ସୁବର୍ଣ୍ଣ ହଂସରୂପେ ଜନ୍ମଗ୍ରହଣ କଲେ । ପୂର୍ବଜନ୍ମର ସୁକୃତରୁ ସେ ଜାତିସ୍ମର ହୋଇଥିଲେ ।

ଏହି ସୁବର୍ଣ୍ଣହଂସ ଆକାରରେ ଅନ୍ୟାନ୍ୟ ହଂସଠାରୁ ଯଥେଷ୍ଟ ବଡ଼ ଥିଲେ ଓ ସ୍ୱର୍ଣ୍ଣପରରେ ବିଭୂଷିତ ହୋଇଥିବାରୁ ଅପୂର୍ବ ଶୋଭା ଧାରଣ କରିଥିଲେ । ସେ ନିଜର ବିଧବା ପତ୍ନୀ ଓ କନ୍ୟାମାନଙ୍କର ଦୁରବସ୍ଥା ଦେଖି ନିତାନ୍ତ ଦୁଃଖିତ ହେଲେ । ସେ ଭାବିଲେ, "ମୋର ଏହି ସୁବର୍ଣ୍ଣପରରୁ ଗୋଟିଏ ଗୋଟିଏ ଦେଲେ ଏମାନେ ସୁଖରେ କାଳଯାପନ କରିପାରିବେ ।"

ଏହିପରି ଚିନ୍ତାକରି ସେ ଦିନେ ଉଡ଼ିଯାଇ ପୂର୍ବଜନ୍ମର ନିଜ ଗୃହ ଉପରେ ବସିଲେ । ଏହି ଅପୂର୍ବ ହଂସକୁ ଦେଖି କନ୍ୟାମାନେ ପଚାରିଲେ, "ତୁମେ କେଉଁଠାରୁ ଆସିଲ ? ତୁମପରି ସୁବର୍ଣ୍ଣପରମଣ୍ଡିତ ହଂସ ଆମ୍ଭେ କେଉଁଠି ଦେଖି ନଥିଲୁ । ତୁମର ଆସିବାର ଉଦ୍ଦେଶ୍ୟ କଅଣ ?"

ବୋଧିସତ୍ତ୍ୱ ଉତ୍ତର କଲେ, "ମୁଁ ପୂର୍ବଜନ୍ମରେ ତୁମମାନଙ୍କର ପିତା ଥିଲି । ତୁମମାନଙ୍କୁ ଦେଖିବାକୁ ଆସିଛି । ତୁମମାନଙ୍କର ଦୁର-

ବସ୍ଥା ଦେଖି ମୋ ମନରେ ଦୁଃଖ ହେଉଅଛି । ମୁଁ ମୋର ସୁବର୍ଣ୍ଣ-ପରରୁ ଗୋଟିଏ ଲେଖାଏଁ ତୁମମାନଙ୍କୁ ଦେଉଥିବି । ତୁମେମାନେ ତାହାକୁ ବିକ୍ରୟ କରି ସ୍ୱଚ୍ଛନ୍ଦରେ ଚଳିପାରିବ ।

ଏହା କହି ସେ ନିଜର ଦେହରୁ ଗୋଟିଏ ସୁବର୍ଣ୍ଣପର ଦେଇ ଚାଲିଗଲେ । ପତ୍ନୀ ଓ କନ୍ୟାମାନେ ସେହି ପରଟିକୁ ବିକି ପ୍ରଚୁର ଅର୍ଥ ପାଇଲେ । ଏହି ଅର୍ଥଦ୍ୱାରା ସେମାନେ ଖୁବ୍ ସ୍ୱଚ୍ଛନ୍ଦରେ ଚଳିଲେ ।

କିଛିଦିନ ପରେ ଥରେ ମାଆ ଝିଅମାନଙ୍କୁ ଡାକି କହିଲା, “ଏ ହଂସ ପୂର୍ବଜନ୍ମରେ ତୁମମାନଙ୍କର ପିତା ଥିଲା । ସେ ଆସି ସୁବର୍ଣ୍ଣପର ଦେଇଯାଉଛି । କିନ୍ତୁ ପଶୁପକ୍ଷୀଙ୍କୁ ବିଶ୍ୱାସ କରିବା ଉଚିତ ନୁହେଁ । କିଏ କହିପାରିବ ଯେ ହଂସ ବରାବର ଏହିପରି ଆସି ଆମକୁ ସୁବର୍ଣ୍ଣ-ପର ଦେଉଥିବ । ଦିନେ ସେ ଯେ ଅନ୍ୟଆଡ଼େ ପଳାଇ ନ ଯିବ, ସେଥିର କି ପ୍ରମାଣ ଅଛି ? ତେଣୁ ଆମେମାନେ ଗୋଟିଏ କାମ କରିବା । ଏଥର ସେ ଆସିଲେ ତାକୁ ଧରି ତା ଦେହରୁ ସବୁଯାକ ପର ଉପାଡ଼ିନେବା । ତାହାହେଲେ, ସବୁ ପର ଆମ ହାତକୁ ଆସିବ । ତେଣିକି ହଂସ ନ ଆସିଲେ ମଧ୍ୟ ଆମର ଚଳିବାର କାରଣ ରହିବ ନାହିଁ ।”

ଝିଅମାନେ କହିଲେ, “ମାଆ, ତୁମ କଥା ସତ; କିନ୍ତୁ ତାଙ୍କ ଦେହରୁ ପରଯାକ ଉପାଡ଼ିଲାବେଳେ ତାଙ୍କୁ ବଡ଼ କଷ୍ଟ ହେବ । ସେ ଦିନେ ଆମର ପିତା ଥିଲେ । କେତେଥର ଆସି ନିଜ ଦେହରୁ ଗୋଟିଏ ଲେଖାଏଁ ସୁନାର ପର ଦେଇ ସେ ଆମର ଦୁଃଖ ଦୂର କରିଅଛନ୍ତି । ତାଙ୍କୁ ଯନ୍ତ୍ରଣା ଦେଇ ତାଙ୍କ ଦେହରୁ ପରଯାକ ଉପାଡ଼ିବା କିପରି ?”

ଝିଅମାନେ ଏପରି କାର୍ଯ୍ୟ କରିବାକୁ ମନା କରିଦେଲେ; କିନ୍ତୁ ମାଆ ଏକାଥରକେ ସବୁ ପର ନେଇ ଧନ ସଞ୍ଚିବାକୁ ମନ

କରିଥାଏ । ତେଣୁ ସେ ନିଜେ ଏହି କାର୍ଯ୍ୟ କରିବାକୁ ସ୍ଥିର କଲା ।

ବୋଧିସତ୍ତ୍ୱ ପୁଣି ଯେତେବେଳେ ଆସିଲେ ସେତେବେଳେ ତାଙ୍କର ସ୍ତ୍ରୀ ତାଙ୍କୁ ଦୁଇ ହାତରେ ମାଡ଼ିବସି ତାଙ୍କ ପରଗୁଡ଼ିକ ଉପାଡ଼ି ପକାଇଲା । କିନ୍ତୁ ଏହି ପରର ଏକ ବିଶେଷ ଗୁଣ ଥିଲା । ବୋଧିସତ୍ତ୍ୱ ସ୍ୱେଚ୍ଛାରେ ଯେଉଁ ପର ଝାଡ଼ି ଦେଉଥିଲେ, ତାହା ସୁନା ହୋଇ ରହୁଥିଲା; କିନ୍ତୁ ତାଙ୍କଠାରୁ ବଳପୂର୍ବକ ଯେଉଁ ପର ଉପାଡ଼ି ନିଆଯାଉଥିଲା, ତାହା ସୁନା ହୋଇ ନ ରହି ସାଧାରଣ ପରରେ ପରିଣତ ହୋଇଯାଉଥିଲା ।

ସ୍ତ୍ରୀ ବୋଧିସତ୍ତ୍ୱଙ୍କ ପରଗୁଡ଼ିକ ଉପାଡ଼ି ନେଲା ସତ; କିନ୍ତୁ ଅଳ୍ପକାଳ ପରେ ସେଗୁଡ଼ିକ ସାଧାରଣ ପରଭଳି ହୋଇଗଲା ।

ଏଣେ ପରଗୁଡ଼ିକ ଗ୍ଭଲିଯିବାରୁ ବୋଧିସତ୍ତ୍ୱ ଉଡ଼ି ଯାଇ-ପାରିଲେ ନାହିଁ । ସ୍ତ୍ରୀ ତାଙ୍କୁ ଗୋଟାଏ ହାଣ୍ଡିକିଆରେ ପକାଇଦେଲା ଓ ପ୍ରତିଦିନ କିଛି କିଛି ଆହାର ଦେଲା । କିଛିଦିନ ପରେ ତାଙ୍କ ଦେହରେ ନୂଆ ପର କଅଁଳିଲା; କିନ୍ତୁ ଏଗୁଡ଼ିକ ପୂର୍ବପରି ସୁନାର ପର ନ ଥିଲା । ଦେହରେ ବଳ ଆସିବାରୁ ଦିନେ ବୋଧିସତ୍ତ୍ୱ ଉଡ଼ି ପଳାଇଗଲେ ।

ସ୍ତ୍ରୀଲୋକଟି ନିଜକୁ ଧିକ୍କାର କରି କହିଲା, "ହାୟ, ମୁଁ ଅତି ଲୋଭ କରି ଏକାବେଳକେ ବହୁତ ଧନ ସଞ୍ଚିବାକୁ ଯାଇ ନିଜର ସର୍ବନାଶ କଲି ।"

***

## ଅନନୁଶୋଚୟ୍ଯ ଜାତକ

ଥରେ ବୋଧିସତ୍ତ୍ୱ ବାରାଣସୀର ଏକ ଧନୀ ବ୍ରାହ୍ମଣର ପୁତ୍ରରୂପେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ବାଲ୍ୟକାଳ ସୁଖରେ ଅତିବାହିତ

ହୋଇଥିଲା । ବୟସର ବୃଦ୍ଧି ହେବାରୁ ସେ ପିତାଙ୍କଦ୍ୱାରା ତକ୍ଷଶିଳାକୁ ପ୍ରେରିତ ହେଲେ ଓ ସେଠାରେ ସୁଯୋଗ୍ୟ ଅଧ୍ୟାପକଙ୍କର ଶିଷ୍ୟ ହୋଇ ଶିକ୍ଷାଲାଭ କଲେ । ଶିକ୍ଷା ସମାପ୍ତ ହେବାରୁ ସେ ଗୁରୁଙ୍କର ଅନୁମତି ନେଇ ପିତାମାତାଙ୍କ ନିକଟକୁ ଫେରିଆସିଲେ ।

ପିତା ଦେଖିଲେ, ପୁତ୍ର ବିବିଧ ବିଦ୍ୟାରେ ନୈପୁଣ୍ୟ ଲାଭ କରିଛି ଓ ଯୌବନରେ ଉପନୀତ । ତେଣୁ ସେ ପୁତ୍ରକୁ ବିବାହ ଦେବା ଉଦ୍ଦେଶ୍ୟରେ ଗୋଟିଏ ରୂପବତୀ ଓ ଗୁଣବତୀ କନ୍ୟାର ଅନୁସନ୍ଧାନ କଲେ ।

ପିତାମାତାଙ୍କର ଏହି ଅଭିପ୍ରାୟ ଜାଣିପାରି ବୋଧିସତ୍ତ୍ୱ ପିତାଙ୍କୁ କହିଲେ, "ପିତଃ, ମୋର ବିବାହ କରିବା ଆଦୌ ଇଚ୍ଛା ନୁହେଁ । ତେଣୁ କନ୍ୟାର ଅନ୍ୱେଷଣ କରିବା ଅନାବଶ୍ୟକ । ମୋର ଲକ୍ଷ୍ୟ ହେଉଛି, ସନ୍ନ୍ୟାସ ଅବଲମ୍ବନ କରି ଧର୍ମମୟ ଜୀବନଯାପନ କରିବା ।"

ପୁତ୍ରର ଏ ପ୍ରକାର ଅଭିଳାଷ ଜାଣି ପିତା ମନେ ମନେ ଦୁଃଖିତ ହେଲେ ଏବଂ ବୈବାହିକ ଜୀବନଯାପନ ନିମନ୍ତେ ପୁତ୍ରକୁ ନାନାପ୍ରକାରେ ପ୍ରବର୍ତ୍ତାଇଲେ । ମାତା ମଧ୍ୟ ବୋଧିସତ୍ତ୍ୱଙ୍କୁ ବିବାହ କରିବା ନିମନ୍ତେ ଏକାନ୍ତ ଅନୁରୋଧ କଲେ । ଏହିପରି ପିତାମାତାଙ୍କର ବାରମ୍ବାର ଅନୁରୋଧରେ ପଡ଼ି ଶେଷରେ ବୋଧିସତ୍ତ୍ୱ କହିଲେ, "ମୋର ବିବାହ କରିବାକୁ ଇଚ୍ଛା ନାହିଁ । ତଥାପି ତୁମମାନଙ୍କ ସନ୍ତୋଷ ନିମନ୍ତେ ବିବାହ କରିବାକୁ ପ୍ରସ୍ତୁତ ଅଛି; କିନ୍ତୁ ମୋର ଇଚ୍ଛାନୁରୂପ କନ୍ୟା ମିଳିଲେ ମୁଁ ବିବାହ କରିବି ।"

ଏହାପରେ ବୋଧିସତ୍ତ୍ୱ ଗୋଟିଏ ଅପୂର୍ବ ସୁନ୍ଦରୀକନ୍ୟାର ସ୍ୱର୍ଣ୍ଣମୟୀ ମୂର୍ତ୍ତି ନିର୍ମାଣ କରାଇ ତାହାକୁ ପିତାଙ୍କୁ ଦେଇ କହିଲେ, "ବାପା, ଠିକ୍ ଏହି ମୂର୍ତ୍ତିଭଳି ଗୋଟିଏ ସୁନ୍ଦରୀ କନ୍ୟା ମିଳିଲେ ମୁଁ ତାହାକୁ ବିବାହ କରିବି ।"

ପିତା ଏହି ମୂର୍ତ୍ତିଟିକୁ ଗୋଟିଏ ସୁସଜ୍ଜିତ ରଥରେ ବସାଇ ବିଶ୍ୱସ୍ତ ଅନୁଚରମାନଙ୍କଦ୍ୱାରା ଘରେଘରେ ବିଭିନ୍ନ ସହରରେ ବୁଲା-ଇଲେ । ଅନୁଚରମାନଙ୍କୁ ଆଦେଶ ଦିଆଯାଇଥିଲା ଯେ ଯଦି ଏହି ମୂର୍ତ୍ତିର ଅନୁରୂପ କନ୍ୟା ମିଳେ, ତେବେ ସୁବର୍ଣ୍ଣ ପ୍ରତିମା ପରିବର୍ତ୍ତରେ ସେମାନେ ସେହି କନ୍ୟାକୁ ଆଣିବେ ଓ ବୋଧିସତ୍ତ୍ୱଙ୍କ ସହିତ ଉକ୍ତ କନ୍ୟାର ବିବାହ ସମ୍ପାଦିତ ହେବ ।

ବ୍ରାହ୍ମଣଙ୍କ ଅନୁଚରମାନେ ସ୍ୱର୍ଣ୍ଣମୟୀ ମୂର୍ତ୍ତି ସହିତ ଅନେକ ନଗର ଓ ଜନପଦ ଭ୍ରମଣ କଲେ; କିନ୍ତୁ କୌଣସିଠାରେ ସେହି ମୂର୍ତ୍ତିର ଅନୁରୂପ କନ୍ୟା ଦେଖିଲେ ନାହିଁ । ଅନନ୍ତର ସେମାନେ କାଶୀରାଜ୍ୟର ଏକ ସହରରେ ଉପସ୍ଥିତ ହେଲେ । ସେହି ସହରରେ ଜଣେ ଧନଶାଳୀ ବ୍ରାହ୍ମଣ ବାସ କରୁଥିଲେ । ସେ ଶତକୋଟି ମୁଦ୍ରାର ଅଧିକାରୀ ଥିଲେ । ତାଙ୍କର ସମ୍ମିଲ୍ଲଭାଷିଣୀ ନାମରେ ଗୋଟିଏ କନ୍ୟା ଥିଲା । ଏହି କନ୍ୟାଟି ରୂପରେ ଅପ୍ସରାମାନଙ୍କୁ ମଧ୍ୟ ନିନ୍ଦା କରୁଥିଲା । ତାହାର ଅନ୍ତରରେ କୌଣସି ପାପଚିନ୍ତା ପ୍ରବେଶ କରି ନ ଥିଲା ।

ସହରର ଲୋକେ ରଥରେ ସୁନାର ପ୍ରତିମାକୁ ଦେଖି ବିସ୍ମିତ ହୋଇଗଲେ ଓ ପରସ୍ପର ମଧ୍ୟରେ କଥାବାର୍ତ୍ତା ହେଲେ, "ଏ କଅଣ ? ଅମୁକଙ୍କ ଝିଅ ସମ୍ମିଲ୍ଲଭାଷିଣୀ ଏଠାକୁ ଆସି ରଥରେ ବସିଛି କାହିଁକି ?"

ଲୋକମାନଙ୍କ ଏ ପ୍ରକାର କଥା ଶୁଣି ବ୍ରାହ୍ମଣଙ୍କ ଅନୁଚରମାନେ ବୁଝିପାରିଲେ ଯେ ମୂର୍ତ୍ତିଟିକୁ ଲୋକେ ବ୍ରାହ୍ମଣଙ୍କ କନ୍ୟା ସମ୍ମିଲ୍ଲଭାଷିଣୀ ବୋଲି ମନେ କରିଅଛନ୍ତି । ତେଣୁ ସେମାନେ ଉକ୍ତ କନ୍ୟାର ପିତାମାତାଙ୍କର ସନ୍ଧାନ ନେଇ ତାଙ୍କୁ ସମସ୍ତ ଘଟନା ଜଣାଇଲେ ଓ ବୋଧିସତ୍ତ୍ୱଙ୍କ ସହିତ ସମ୍ମିଲ୍ଲଭାଷିଣୀଙ୍କର ବିବାହ ପ୍ରସ୍ତାବ ଦେଲେ । ପିତାମାତା ଏହି ପ୍ରସ୍ତାବରେ ଆନନ୍ଦରେ ସ୍ୱୀକୃତ ହେଲେ; କିନ୍ତୁ

ସମ୍ମିଲ୍ଲଭାଷିଣୀ କହିଲେ, "ମୁଁ ବିବାହ କରି ପୁତ୍ରକନ୍ୟାଙ୍କର ଜନନୀ ହେଲେ ସୁଖୀ ହୋଇପାରିବ ନାହିଁ । ମୁଁ ବର୍ତ୍ତମାନ ପିତାମାତାଙ୍କ ସେବାକରି ସନ୍ତୁଷ୍ଟ । ସେମାନଙ୍କ ଅନ୍ତେ ମୁଁ ସନ୍ନ୍ୟାସିନୀ ହୋଇ ଧର୍ମକାର୍ଯ୍ୟରେ ନିଜକୁ ନିୟୋଜିତ କରିବାକୁ ସ୍ଥିର କରିଛି ।" କିନ୍ତୁ ତାର ପିତାମାତା କନ୍ୟାର ଏହି ଅଭିଳାଷ ପ୍ରତି କିଛିମାତ୍ର ଗୁରୁତ୍ୱ ନ ଦେଇ ସୁବର୍ଣ୍ଣ ପ୍ରତିମାଟି ଗ୍ରହଣ କଲେ ଓ ବୋଧିସତ୍ତ୍ୱଙ୍କ ସହିତ ବିବାହ ନିମନ୍ତେ ଉପଯୁକ୍ତ ଧନରତ୍ନ ଦେଇ କନ୍ୟାକୁ ପଠାଇଦେଲେ ।

ଏହିପରି ବରକନ୍ୟା ଉଭୟଙ୍କର ଅନିଚ୍ଛାସତ୍ତ୍ୱେ କେବଳ ପିତାମାତାଙ୍କର ସନ୍ତୋଷ ବିଧାନ ନିମନ୍ତେ ବୋଧିସତ୍ତ୍ୱ ଓ ସମ୍ମିଲ୍ଲ-ଭାଷିଣୀ ପରସ୍ପର ବିବାହ ବନ୍ଧନରେ ଆବଦ୍ଧ ହେଲେ; କିନ୍ତୁ ସେ ଦୁହେଁ ଏକ ଗୃହରେ, ଏକ ଶଯ୍ୟାରେ ରହୁଥିଲେ ସୁଦ୍ଧା କେବେ-ହେଲେ କାମନାର ତୃପ୍ତି ଲାଗି ଲାଳାୟିତ ନ ଥିଲେ; ସନ୍ନ୍ୟାସୀ ଓ ସନ୍ନ୍ୟାସିନୀ ପରି ସେମାନେ ଧର୍ମଶାସ୍ତ୍ର ପାଠ ଓ ପାରଲୌକିକ ଚିନ୍ତାରେ ସମୟ ଅତିବାହିତ କରୁଥିଲେ ।

କାଳକ୍ରମେ ବୋଧିସତ୍ତ୍ୱଙ୍କର ପିତା ଓ ପରେ ମାତା ସ୍ୱର୍ଗା-ରୋହଣ କଲେ । ବୋଧିସତ୍ତ୍ୱ ସେମାନଙ୍କର ଔର୍ଦ୍ଧ୍ୱଦୈହିକ କ୍ରିୟା ଯଥାବିଧି ସମ୍ପାଦନ କଲେ । ତତ୍ପରେ ସେ ପତ୍ନୀଙ୍କୁ ଡାକି କହିଲେ, "ପ୍ରିୟେ, ମୋର ଆଠକୋଟି ମୁଦ୍ରା ପୈତୃକ ସମ୍ପତ୍ତିରୂପେ ସଞ୍ଚିତ ଅଛି । ତୁମେ ତୁମର ପିତାଙ୍କଠାରୁ ଆଠକୋଟି ମୁଦ୍ରା ଯୌତୁକରୂପେ ଆଣିଅଛ । ଏହି ଧନରେ ତୁମେ ସ୍ୱଚ୍ଛନ୍ଦରେ ଜୀବନଯାତ୍ରା ନିର୍ବାହ କର । ଦାସଦାସୀମାନଙ୍କ ଦ୍ୱାରା ତୁମର ସମସ୍ତ ଅସୁବିଧା ଦୂର ହୋଇପାରିବ । ମୁଁ ଏବେ ସନ୍ନ୍ୟାସ ଅବଲମ୍ବନପୂର୍ବକ ଗୃହ ତ୍ୟାଗ-କରି ଯାଉଅଛି ।"

ଏହା ଶୁଣି ପତ୍ନୀ ଉତ୍ତର କଲେ, "ପତି ପତ୍ନୀର ଦେବତା । ତୁମେ ସନ୍ନ୍ୟାସୀ ହୋଇ ଗୃହତ୍ୟାଗ କରିଗଲେ ମୁଁ କାହିଁକି କେଉଁ ସୁଖ ଆଶାରେ ଗୃହରେ ରହିବ । ମୁଁ ମଧ୍ୟ ସନ୍ନ୍ୟାସିନୀ ହୋଇ ଯିବି । ମୁଁ ତୁମକୁ ତ୍ୟାଗକରି ରହି ନ ପାରେ । ମୋତେ ସଙ୍ଗରେ ନିଅ । ମୁଁ ତୁମର ଧର୍ମ ପଥରେ ପ୍ରତିବନ୍ଧକ ନ ହୋଇ ବରଂ ସହାୟ ହେବି । ମୋର ଏହି ପ୍ରାର୍ଥନା ପୂରଣ କର ।"

ବୋଧିସତ୍ତ୍ୱ ଏଥିପୂର୍ବରୁ ପତ୍ନୀଙ୍କର ଅଧ୍ୟାତ୍ମିକ ମନୋଭାବର ପରିଚୟ ପାଇଥିଲେ । ତେଣୁ ସେ ତାଙ୍କୁ ସଙ୍ଗରେ ନେବାପାଇଁ ସ୍ୱୀକୃତ ହେଲେ । ସେମାନଙ୍କର ଯେତେ ଧନ ଥିଲା, ସେ ସବୁ ଦାନ ଦରିଦ୍ରମାନଙ୍କ ମଧ୍ୟରେ ବିତରଣ କରାଗଲା । ତଦନନ୍ତର ସେ ଦୁହେଁ ଏକବସ୍ତ୍ର ହୋଇ ଶୂନ୍ୟହସ୍ତରେ ଭ୍ରମଣ କରିବାକୁ ଲାଗିଲେ । ଭିକ୍ଷା-ଲବ୍ଧ ଅନ୍ନ ହିଁ ସେମାନଙ୍କ ଜୀବନରକ୍ଷାର ଅବଲମ୍ବନ ହେଲା । ଶାସ୍ତ୍ର ଅଧ୍ୟୟନ, ତୀର୍ଥଭ୍ରମଣ ଓ ଈଶ୍ୱରଚିନ୍ତା ସେମାନଙ୍କର ଦୈନନ୍ଦିନ କାର୍ଯ୍ୟ ହେଲା । ବନପ୍ରଦେଶରେ ଭ୍ରମଣବେଳେ ବୃକ୍ଷର ଫଳମୂଳ ବ୍ୟତୀତ ସେମାନେ ଅନ୍ୟକିଛି ଭୋଜନ କରୁ ନ ଥିଲେ; ନିର୍ଝରିଣୀର ଜଳ ସେମାନଙ୍କର ତୃଷା ଦୂର କରୁଥିଲା ।

ଏହିପରି ସେମାନେ ହିମାଳୟ ପର୍ଯ୍ୟନ୍ତ ଭ୍ରମଣ କଲେ । ତତ୍ପରେ ସେମାନେ ନାନା ତୀର୍ଥସ୍ଥାନ ବୁଲି ବୁଲି ବାରାଣସୀ ନଗରରେ ଉପସ୍ଥିତ ହୋଇ ରାଜୋଦ୍ୟାନରେ ଆଶ୍ରୟ ନେଲେ । ଏଠାରେ ଥିବା ଅବସ୍ଥାରେ ଭିକ୍ଷାନ୍ନ ଭକ୍ଷଣ କରି ସମ୍ମିଲ୍ଲଭାଷିଣୀ ଅତିସାର ରୋଗରେ ଆକ୍ରାନ୍ତ ହେଲେ । କୌଣସି ଔଷଧ ଓ ଉପ-ଯୁକ୍ତ ପଥ୍ୟର ଅଭାବରୁ ଦିନକୁଦିନ ତାଙ୍କର ସ୍ୱାସ୍ଥ୍ୟ ଅତ୍ୟନ୍ତ ଖରାପ ହେଲା । ତହୁଁ ବୋଧିସତ୍ତ୍ୱ ତାହାଙ୍କୁ ଗୋଟିଏ ବୃକ୍ଷ ମୂଳରେ ଶୁଆଇ ଦେଇ ଭିକ୍ଷା କରିବାକୁ ଚାଲିଗଲେ ।

ଇତ୍ୟବସରରେ ନଗରର ବହୁ ନରନାରୀ ଏହି ଅପୂର୍ବ ସୁନ୍ଦରୀ ସନ୍ନ୍ୟାସିନୀଙ୍କୁ ଦେଖିବାପାଇଁ ତାଙ୍କ ଗୃହପାଖେ ରୁଣ୍ଡହେଲେ । ସନ୍ନ୍ୟାସିନୀଙ୍କର ଦୁରବସ୍ଥା ଦେଖି ସମସ୍ତେ ହାୟ ହାୟ କରିବାକୁ ଲାଗିଲେ । କିଛି ସମୟ ପରେ ସନ୍ନ୍ୟାସିନୀ ଇହଧାମ ତ୍ୟାଗ କରି-ଗଲେ । ତାଙ୍କ ରୋଗ ଯନ୍ତ୍ରଣା ଚିରଦିନ ପାଇଁ ଦୂର ହୋଇଗଲା । ଲୋକେ ତାଙ୍କ ମୃତ୍ୟୁରେ ଗଭୀର ଦୁଃଖ ପ୍ରକାଶ କଲେ ଓ ଅନେକେ ଉଚ୍ଚସ୍ୱରରେ ବିଳାପ କରିବାକୁ ଲାଗିଲେ ।

ସନ୍ଧ୍ୟା ସମୟରେ ବୋଧିସତ୍ତ୍ୱ ଭିକ୍ଷା ଶେଷ କରି ବୃକ୍ଷ-ମୂଳକୁ ଫେରିଆସି ଦେଖିଲେ, ତାଙ୍କ ପତ୍ନୀଙ୍କର ମୃତ୍ୟୁ ହୋଇଅଛି ଓ ବହୁ ନରନାରୀ ତାଙ୍କୁ ବେଢ଼ି ବିଳାପ କରୁଅଛନ୍ତି । ସେ ଲବ-ମାତ୍ର ବିଚଳିତ ନ ହୋଇ ଧୀରଭାବରେ ପତ୍ନୀଙ୍କର ଶବ ନିକଟରେ ବସିଲେ ଓ ଭିକ୍ଷାପାତ୍ରରୁ ଅନ୍ନ ଭୋଜନ କରିବାକୁ ଲାଗିଲେ । କେହି କେହି ତାଙ୍କୁ ପ୍ରଶ୍ନ କଲେ, "ଏ ସନ୍ନ୍ୟାସିନୀ ଆପଣଙ୍କର କିଏ ହୁଅନ୍ତି ?"

ବୋଧିସତ୍ତ୍ୱ ଉତ୍ତର କଲେ, "ଜୀବିତ ଅବସ୍ଥାରେ ସେ ମୋର ପତ୍ନୀ ଥିଲେ ଓ ମୁଁ ସନ୍ନ୍ୟାସ ଗ୍ରହଣ କରିବାରୁ ସେ ମଧ୍ୟ ସନ୍ନ୍ୟାସିନୀ ହୋଇଥିଲେ । ଏବେ ସେ ମୃତ ।"

ଲୋକେ ବିସ୍ମିତ ହୋଇ ପଚାରିଲେ, "ଆମ୍ଭମାନଙ୍କ ସହିତ ତାଙ୍କର କିଛି ସମ୍ବନ୍ଧ ନ ଥିଲା; ତଥାପି ତାଙ୍କ ମୃତ୍ୟୁରେ ଆମେମାନେ ଦୁଃଖରେ କ୍ରନ୍ଦନ କରୁଛୁ । କିନ୍ତୁ ଆପଣ ପତ୍ନୀଙ୍କ ମୃତ୍ୟୁରେ ଦୁଃଖ ପ୍ରକାଶ କରିବା ଦୂରେ ଥାଉ, ନିର୍ବିକାର ଚିତ୍ତରେ ଅନ୍ନ ଭୋଜନ କରୁଅଛନ୍ତି । ଏହାଠାରୁ ବଳି ଆଶ୍ଚର୍ଯ୍ୟ କଥା କଅଣ ହୋଇ-ପାରେ ?"

ବୋଧିସତ୍ତ୍ୱ ଲୋକମାନଙ୍କୁ ସଂସାରର ଅନିତ୍ୟତା ବୁଝାଇବା ପାଇଁ କହିଲେ, "ମାନବ ମାତ୍ରେ ମରଣଶୀଳ । ଶରୀର ଆଜି ନା ଆଜି ନଶ୍ୱର ବିନଷ୍ଟ ହେବ । କୌଣସି ଉପାୟରେ ଏହାର ଅନ୍ୟଥା କରିଯାଇନପାରେ । ତେବେ ଯାହା ଅବଶ୍ୟମ୍ଭାବୀ, ସେଥିପାଇଁ ଦୁଃଖ କରିବାରେ ଲାଭ କଅଣ ? ସେ ମୋର ପତ୍ନୀ ଥିଲେ; ମୁଁ ତାଙ୍କର ପତି ଥିଲି । ସେ ମୃତ୍ୟୁଲାଭ କରିବା ସଙ୍ଗେ ସଂସାରର ସମସ୍ତ ସମ୍ବନ୍ଧ ଛୁଟାଇ ଯାଇଅଛନ୍ତି । ଆଗେ ମୋର ମରଣ ହୋଇଥିଲେ ମୁଁ ମଧ୍ୟ ସେହିପରି ତାଙ୍କ ସହିତ ସକଳ ସମ୍ପର୍କ ଛୁଟାଇ ଦେଇ ପରଲୋକକୁ ଚାଲିଯାଇଥାନ୍ତି । ତେଣୁ ତାଙ୍କ ମୃତ୍ୟୁରେ ଦୁଃଖ ପ୍ରକାଶ କରି କ୍ରନ୍ଦନ ବା ବିଳାପ କରିବାର କୌଣସି ପ୍ରୟୋଜନ ମୁଁ ଦେଖିପାରୁ ନାହିଁ । ମନୁଷ୍ୟ ଅଳ୍ପକାଳପାଇଁ ପୃଥିବୀକୁ ଆସିଥାଏ, ସମୟ ଉପସ୍ଥିତ ହେଲେ ସେ ଇହଲୋକ ତ୍ୟାଗ କରିଯାଏ । କେବଳ ବିଷୟାସକ୍ତ ମାନବ ମାୟାରେ ପଡ଼ି ମୃତବ୍ୟକ୍ତି ପାଇଁ ଶୋକ କରିଥାଏ ।"

ବୋଧିସତ୍ତ୍ୱଙ୍କର ଏ ପ୍ରକାର ଉପଦେଶ ବାଣୀ ଶ୍ରବଣ କରି ଲୋକେ ତାଙ୍କର ପ୍ରଶଂସା ପୂର୍ବକ କହିଲେ, "ଏହାଙ୍କ ପରି ଜୀବନ୍ମୁକ୍ତ ବ୍ୟକ୍ତି ହିଁ ଧନ୍ୟ । ଯଥାର୍ଥରେ ସେ ମୃତ୍ୟୁକୁ ଜୟ କରିଅଛନ୍ତି । ଯେଉଁ ମୃତ୍ୟୁର ନାମ ସ୍ମରଣରେ ସାଧାରଣ ଲୋକେ କମ୍ପି ଉଠନ୍ତି, ତାକୁ ଏ ମହାତ୍ମା ଯେକୌଣସି ମୁହୂର୍ତ୍ତରେ ଭେଟିବା ପାଇଁ ପ୍ରସ୍ତୁତ । ଧନ୍ୟ ଏ ମହାପୁରୁଷ ।

ଲୋକେ ସନ୍ନ୍ୟାସିମାଙ୍କର ଶବକୁ ଯଥାବିଧି ସତ୍କାର କଲେ । ବୋଧିସତ୍ତ୍ୱ ପୁନରାୟ ହିମାଳୟକୁ ଯାଇ ଧର୍ମାଚରଣ କରିବାକୁ ଲାଗିଲେ ।

***

## ପରନ୍ତପ ଜାତକ

ଏକ ଜନ୍ମରେ ବୋଧିସତ୍ତ୍ୱ ବାରାଣସୀର ରାଜା ବ୍ରହ୍ମଦତ୍ତଙ୍କ ପାଟରାଣୀଙ୍କ ଗର୍ଭରୁ ତାଙ୍କର ପୁତ୍ର ରୂପେ ଜନ୍ମିଥିଲେ । ଯଥା-ସମୟରେ ସେ ପିତାଙ୍କ ଦ୍ୱାରା ତକ୍ଷଶିଳାକୁ ପ୍ରେରିତ ହୋଇ ସେଠାରେ ବିବିଧ ଶାସ୍ତ୍ରରେ ପାରଦର୍ଶିତା ଲାଭ କଲେ । ଏହା ଛଡ଼ା ସେ ନିଜର ଗୁରୁଙ୍କଠାରୁ ଏକ ବିଶିଷ୍ଟ ବିଦ୍ୟା ଶିକ୍ଷା କରିଥିଲେ । ଏହା ଫଳରେ ସେ ପଶୁପକ୍ଷୀଙ୍କର କଥା ମଧ୍ୟ ବୁଝି ପାରୁଥିଲେ । ବିଦ୍ୟାଶିକ୍ଷାପରେ ସେ ବାରାଣସୀକୁ ଫେରି ଆସିଲେ ।

ବୋଧିସତ୍ତ୍ୱ ତକ୍ଷଶିଳାରେ ଥିବା ସମୟରେ ରାଜା ବ୍ରହ୍ମଦତ୍ତ କେତେକ ଲୋକଙ୍କ ପ୍ରରୋଚନାରେ ପଡ଼ି ପୁତ୍ରପ୍ରତି ବିଦ୍ୱେଷ ପୋଷଣ କରିଥିଲେ । ଏପରି କି ସେ ପୁତ୍ରର ମୃତ୍ୟୁ କାମନା କରିବାକୁ କୁଣ୍ଠିତ ନଥିଲେ । ବୋଧିସତ୍ତ୍ୱ ରାଜଧାନୀକୁ ଫେରି ଆସିବାରୁ ସେ ପ୍ରଥା ଅନୁସାରେ ତାଙ୍କୁ ରାଜପ୍ରତିନିଧିରୂପେ ନିଯୁକ୍ତ କଲେ ମଧ୍ୟ ମନେ ମନେ ତାଙ୍କର ଅନିଷ୍ଟ ଚିନ୍ତା କରୁଥିଲେ ।

ଦିନେ ରାତ୍ରିର ବହିରେ ସମସ୍ତେ ନିଦ୍ରାରେ ଅଭିଭୂତ ଥିବା ସମୟରେ ଗୋଟିଏ ଶୃଗାଳୀ ତାହାର ଦୁଇଟି ଶାବକ ସହିତ ନଗରରେ ପ୍ରବେଶ କଲା । ରାଜପ୍ରାସାଦରେ ଯେଉଁଠାରେ ବୋଧିସତ୍ତ୍ୱ ରହୁଥିଲେ, ତାହାର ନିକଟବର୍ତ୍ତୀ ଗୋଟିଏ କୋଠରିରେ ଜଣେ ପଥଶ୍ରାନ୍ତ ପଥିକ ବିଶ୍ରାମ କରୁଥିଲା । ସେ ପାଦରୁ ଜୋତା ଯୋଡ଼ିକ ଖୋଲି ରଖିଦେଇ ଶୋଇବାକୁ ଗଲା; କିନ୍ତୁ ତାକୁ ନିଦ୍ରା ଆସି ନଥାଏ । ଶୃଗାଳଶାବକମାନେ କ୍ଷୁଧାର୍ତ୍ତ ହୋଇ ମାଆକୁ ଖାଇବାକୁ ମାଗିବାରୁ ସେ କହିଲା, "ତୁମ୍ଭେମାନେ ଗୋଳମାଳ କରନାହିଁ ।

ପଥିକଟିକୁ ନଦ ହୋଇଗଲେ ମୁଁ ତାର ଜୋତା ଯୋଡ଼ିକ ଆଣି ତୁମକୁ ଖାଇବାକୁ ଦେବି ।”

ବୋଧିସତ୍ତ୍ୱ ଶୃଗାଳୀ ଓ ତାର ଶାବକମାନଙ୍କ କଥା ବୁଝିପାରି ପଥିକକୁ ଡାକି ପଚାରିଲେ, “ତୁମର ଜୋତା କାହିଁ ?” ପଥିକ କହିଲା, “ମୋର ଗୋଡ଼ ପାଖେ ରହିଛି ।” ତହୁଁ ବୋଧିସତ୍ତ୍ୱ ତାକୁ ଉପଦେଶ ଦେଇ କହିଲେ; “ଜୋତା ଯୋଡ଼ିକୁ ଉଚ୍ଚ ସ୍ଥାନରେ ଟାଙ୍ଗି ଦିଅ । ନଚେତ୍ କୁକ୍କୁର କମ୍ବା ବିଲୁଆ ଆସି ନେଇ ଯିବେ ।” ପଥିକ ତାହା ହିଁ କଲା । ଶୃଗାଳୀ ଦେଖିଲା, ତାହାର ଆଶା ପଣ୍ଡ ହୋଇଅଛି । ଏତେ ଉଚ୍ଚ ସ୍ଥାନରୁ ଜୋତା ନେଇ ଆସିବା ତାହା ପକ୍ଷରେ ଅସମ୍ଭବ । ଏହି ହେତୁରୁ ସେ ବୋଧିସତ୍ତ୍ୱଙ୍କ ଉପରେ କ୍ଷୁବ୍ଧ ହୋଇ ରହିଲା ।

ଆଉ ଦିନେ ଜଣେ ଲୋକ ମଦ ପିଇ ମାତାଲ ହୋଇ ପାଣି ପିଇବାକୁ ପୋଖରୀରେ ପଶିଲା । ନଶାରେ ତା ପାଦ ଟଳମଳ ହେଉଥିଲା । ପୋଖରୀରେ ପଦ୍ମଲତା ପୂରିଥିଲା । ସେ ପାଣି ପିଇବାକୁ ଭିତରକୁ ଯାଉ ଯାଉ ଅଥଳ ପାଣିରେ ପଶିଗଲା । ପଦ୍ମଲତାରେ ତାର ପାଦ ଛନ୍ଦି ହୋଇଯିବାରୁ ସେ ବୁଡ଼ିଯାଇ ପ୍ରାଣ ହରାଇଲା । ତାହାର ଅଣ୍ଟାରେ ଏକ ସହସ୍ର ମୁଦ୍ରା ଓ ହାତର ଅଙ୍ଗୁଳିରେ ଗୋଟିଏ ସୁନା ମୁଦି ଥିଲା । ଦୈବାତ୍ ସେହି ଶୃଗାଳୀ ପୁଷ୍କରିଣୀର ନିକଟରେ ଥିଲା । ଛୁଆ ଦୁଇଟି ତାକୁ ଆହାର ମାଗିବାରୁ ସେ କହିଲା, “ତୁମେମାନେ ଆଉ ଟିକିଏ ଅପେକ୍ଷା କର । ପୋଖରୀରେ ଗୋଟିଏ ଲୋକ ମରିଛି । କିଛି ସମୟ ପରେ ତାର ଶବ ପୋଖରୀ କୂଳରେ ଲାଗିବ । ତା ଅଣ୍ଟାରେ ହଜାରେ ମୁଦ୍ରା ଓ ଅଙ୍ଗୁଳିରେ ଗୋଟିଏ ସୁନା ମୁଦି ଅଛି । ସେ କୂଳରେ ଲାଗିଲେ ମୁଁ ତାକୁ ଟାଣି ଆଣି ତୁମମାନଙ୍କୁ ଖାଇବାକୁ ଦେବି ।”

ବୋଧିସତ୍ତ୍ୱ ଶୃଗାଳୀ ଓ ତାର ଶାବକମାନଙ୍କ କଥାରୁ ଏହା ଜାଣିପାରି ଜଣେ ସେବକଙ୍କୁ ଡାକି କହିଲେ, "ପଦ୍ମପୋଖରୀକୁ ଯାଅ । ସେଠାରେ ଜଣେ ଲୋକ ବୁଡ଼ି ମରିଛି । ତାର ଅଣ୍ଟା ଖୋସଣିରେ ଏକ ହଜାର ସ୍ୱର୍ଣ୍ଣମୁଦ୍ରା ଓ ଆଙ୍ଗୁଠିରେ ଗୋଟିଏ ସୁନା ମୁଦି ଅଛି । ସେଗୁଡ଼ିକ ନେଇ ଆସିବୁ । ଆଉ ଗୋଟିଏ କଥା । ଶବଟିକୁ ଗୋଟିଏ ପଥରରେ ବାନ୍ଧିଦେବୁ ଯେ ତାହା ଉପରକୁ ଭାସି ଉଠିବ ନାହିଁ ।" ସେବକଟି ପଦ୍ମପୋଖରୀକୁ ଯାଇ ତାହା ହିଁ କଲା ।

ଶୃଗାଳ ଏହିପରି ତାର ଆହାରରୁ ବଞ୍ଚିତ ହୋଇ ନିତାନ୍ତ କ୍ଷୁବ୍ଧ ହୋଇ କହିଲା "ଏ ଲୋକଟା ଥରେ ମୋର ପିଲାମାନଙ୍କର ଜୋଟା ଖାଇବା ବନ୍ଦ କରିଥିଲା । ଆଜି ମଲା ଲୋକଟାକୁ ଖାଇ ସେମାନେ ସନ୍ତୁଷ୍ଟ ହୋଇଥାନ୍ତେ; କିନ୍ତୁ ଏ ପୁଣି ସେଥିରେ ବାଦ କଲା । ଆଜିଠାରୁ ତିନିଦିନ ପରେ ଜଣେ ଶତ୍ରୁରାଜା ଆସି ଏ ରାଜ୍ୟକୁ ଆକ୍ରମଣ କରିବ । ଏହାକୁ ତା'ର ବାପ ଯୁଦ୍ଧ କରିବାକୁ ପଠାଇବ । ଯୁଦ୍ଧରେ ଶତ୍ରୁମାନେ ଏହାର ମୁଣ୍ଡ କାଟି ନେବେ । ମୁଁ ସେତେ-ବେଳେ ଏହାର ରକ୍ତ ପିଇବି । ମୋର ମନ ସନ୍ତୁଷ୍ଟ ହେବ ।" ଏହିପରି କହି ଶୃଗାଳୀ ଛୁଆମାନଙ୍କ ସହିତ ଚାଲିଗଲା ।

ବୋଧିସତ୍ତ୍ୱ ଶୃଗାଳୀର କଥା ଶୁଣି ମନେ ମନେ ଚିନ୍ତିତ ହେଲେ । ପ୍ରକୃତରେ ତିନିଦିନ ପରେ ଜଣେ ଶତ୍ରୁରାଜା ସୈନ୍ୟ ଘେନି ନଗରକୁ ଅବରୋଧ କଲେ । ରାଜା ବୋଧିସତ୍ତ୍ୱଙ୍କୁ ଆଦେଶ ଦେଲେ, "ଶତ୍ରୁ ଆମ ନଗର ଆକ୍ରମଣ କରିଛି । ଯାଅ, ତାକୁ ବିତାଡ଼ିତ କର ।" ବୋଧିସତ୍ତ୍ୱ ବିନୀତଭାବରେ ଉତ୍ତର କଲେ, "ପିତଃ, ମୁଁ ଗୋଟିଏ ଅଶୁଭ ସୂଚନା ପାଇଛି ଯେ ଶତ୍ରୁ ସହିତ ଯୁଦ୍ଧକଲେ ସେଥିରେ ମୋର ମୃତ୍ୟୁ ହେବ । ତେଣୁ ମୋତେ ପଠାନ୍ତୁ ନାହିଁ ।" ସହଜେ ରାଜା ବୋଧିସତ୍ତ୍ୱଙ୍କ ଉପରେ ବିରକ୍ତ ଥିଲେ

ଏହି ଉତ୍ତରରେ ସେ କ୍ରୋଧାନ୍ଧ ହୋଇ କହିଲେ, "ଯୁଦ୍ଧରେ ତୋର କଅଣ ହେବ, ତାହା ବିଚାର କରିବା ସମସ୍ତ ଏ ନୁହେଁ । ଶତ୍ରୁକୁ ବିତାଡ଼ିତ କରିବା ରାଜପ୍ରତିନିଧିର କାର୍ଯ୍ୟ । ତେଣୁ ତୋତେ ଯିବାକୁ ହେବ ।"

ଅଗତ୍ୟା ରାଜାଙ୍କର ଆଦେଶ ମାନି ବୋଧିସତ୍ତ୍ୱଙ୍କୁ ଯିବାକୁ ହେଲା । କିନ୍ତୁ ଯେଉଁ ଦ୍ୱାର ଶତ୍ରୁଦ୍ୱାରା ଅବରୁଦ୍ଧ ହୋଇଥିଲା ସେ ଦ୍ୱାରବାଟେ ନଯାଇ ସେ ଅନ୍ୟ ଏକ ଗୁପ୍ତଦ୍ୱାର ବାଟେ ବାହାରି ଗଲେ । ନଗରର ଲୋକେ ତାଙ୍କୁ ଅନୁସରଣ କରି ନଗରରୁ ଚାଲିଗଲେ । ସେ ନଗରବାସୀଙ୍କ ସହିତ ଯାଇ ଗୋଟିଏ ପ୍ରଶସ୍ତ ପ୍ରାନ୍ତରରେ ଶିବିର ପକାଇ ଶତ୍ରୁକୁ ଅପେକ୍ଷା କରି ରହିଲେ ।

ଏଣେ ରାଜା ଚିନ୍ତାକଲେ, "ପୁଅ ନଗରର ସୈନ୍ୟସାମନ୍ତ ଓ ଲୋକମାନଙ୍କୁ ନେଇ ଚାଲିଗଲା । ବର୍ତ୍ତମାନ ସହର ଜନଶୂନ୍ୟ । ଶତ୍ରୁ ଆସିଲେ ଅକ୍ଳେଶରେ ନଗର ଅଧିକାର କରି ମୋତେ ବଧ କରିବ । ଆଗେ ନିଜର ଜୀବନ ରକ୍ଷା କରିବା ଦରକାର । ଏହି-ପରି ବିଚାରି ସେ ପାଟରାଣୀ, ରାଜପୁରୋହିତ ଓ ପରନ୍ତପ ବୋଲି ଜଣେ ବିଶ୍ୱସ୍ତ ଭୃତ୍ୟ, ଏହି ତିନିଜଣଙ୍କୁ ସଙ୍ଗରେ ନେଇ ଛଦ୍ମ-ବେଶରେ ରାଜପ୍ରାସାଦ ଛାଡ଼ି ପଳାଇଗଲେ ଓ ଗୋଟିଏ ବନରେ ଲୁଚି ରହିଲେ ।

ରାଜା ପଳାଇ ଯାଇଥିବା ସମ୍ବାଦ ପାଇ ବୋଧିସତ୍ତ୍ୱ ସମସ୍ତ ଅନୁଚର ସହିତ ନଗରକୁ ଫେରିଆସିଲେ ଓ ଶତ୍ରୁ ସହିତ ଯୁଦ୍ଧ କରି ସେମାନଙ୍କୁ ତଡ଼ିଦେଲେ । ରାଜ୍ୟ ନିରାପଦ ହେଲା । ବୋଧିସତ୍ତ୍ୱ ନିର୍ଦ୍ୱନ୍ଦ୍ୱରେ ରାଜ୍ୟଶାସନ କରିବାକୁ ଲାଗିଲେ ।

ରାଜା ବନ ମଧ୍ୟରେ ଏକ ନଦୀ ତୀରରେ ଗୋଟିଏ କୁଟୀର ନିର୍ମାଣ କରି ପାଟରାଣୀ, ପୁରୋହିତ ଓ ପରନ୍ତପ ସହିତ ବାସ

କରୁଥାନ୍ତି । ବନରୁ ଫଳମୂଳ ସଂଗ୍ରହ କରି ସେମାନେ ଜୀବନଯାତ୍ରା ନିର୍ବାହ କରୁଥାନ୍ତି । ରାଜା ରାଣୀଙ୍କୁ ଜଗିବାପାଇଁ ପରନ୍ତପଙ୍କୁ କୁଟୀରରେ ଛାଡ଼ିଦେଇ ପୁରୋହିତଙ୍କ ସହିତ ବନରୁ ଫଳମୂଳ ସଂଗ୍ରହ କରିବାକୁ ପ୍ରତ୍ୟହ ଯାଉଥିଲେ । ଏଥି ମଧ୍ୟରେ ରାଣୀଙ୍କର ଗର୍ଭୋଦୟ ହେଲା ।

ପରନ୍ତପ ସହିତ ଏକୁଟିଆ ରହିବା ଫଳରେ କ୍ରମେ ରାଣୀ ତାହାପ୍ରତି ଆସକ୍ତ ହେଲେ ଓ ଦୁହିଁଙ୍କ ମଧ୍ୟରେ ପାପପ୍ରଣୟ ଜାତ ହେଲା । ଦିନେ ରାଣୀ ପରନ୍ତପଙ୍କୁ କହିଲେ, "ଦେଖ, ଆମ ଦୁହିଁଙ୍କ ଭିତରେ ଗୁପ୍ତପ୍ରଣୟ ଅଛି ବୋଲି ଆଜଯାଏ ରାଜା ଜାଣିପାରି-ନାହାନ୍ତି । କିନ୍ତୁ ଯେଉଁଦିନ ସେ ଏହା ଜାଣିବେ, ସେଦିନ ମୋର ଜୀବନ ରହିବ ନାହିଁ କି ତୁମର ଜୀବନ ରହିବ ନାହିଁ । ଏଣିକିବେଳୁ ସେଥିର ପ୍ରତିକାର କରିବା ଦରକାର ।"

ପରନ୍ତପ ପଚାରିଲା, "କି ପ୍ରତିକାର କରାଯାଇପାରେ ?"

ରାଣୀ ବୁଝାଇ କହିଲେ, "ଏହାର ଏକମାତ୍ର ପ୍ରତିକାର ହେଉଛି, ରାଜାଙ୍କୁ ବଧ କରିବା । ତାଙ୍କୁ ହତ୍ୟା କରିବା ସେପରି କଷ୍ଟକର ହେବ ନାହିଁ । ରାଜା ପ୍ରତିଦିନ ନଦୀକୁ ସ୍ନାନ କରିବାକୁ ଗଲାବେଳେ ତୁମେ ତାଙ୍କର ପୋଷାକ ଓ ତରବାରି ନେଇ ତାଙ୍କ ସଙ୍ଗରେ ନଦୀକୂଳକୁ ଯାଅ । ରାଜା ଅସାବଧାନ ଥିଲାବେଳେ ତୁମେ ସହଜରେ ତରବାରି ସାହାଯ୍ୟରେ ତାଙ୍କୁ ହତ୍ୟା କରିପାରିବ ।"

ଏହି ପ୍ରସ୍ତାବଟି ପରନ୍ତପର ମନକୁ ପାଇଲା । ଦିନେ ରାଜ-ପୁରୋହିତ ଫଳ ସଂଗ୍ରହ କରିବା ପାଇଁ ବନକୁ ଯାଇଥିଲେ । ଏଥି ମଧ୍ୟରେ ରାଜା ସ୍ନାନ କରିବାକୁ ବାହାରିଲେ । ପରନ୍ତପ ରାଜାଙ୍କ ପୋଷାକ ଓ ତରବାରି ଧରି ତାଙ୍କ ସଙ୍ଗରେ ଗଲା । ରାଜା ସ୍ନାନ କରିବା ନିମନ୍ତେ ନଦୀଜଳରେ ପ୍ରବେଶ କଲାମାତ୍ରେ ପରନ୍ତପ ହଠାତ୍

ତାଙ୍କ ମୁଣ୍ଡକୁ ଧରି ହାଣିବାକୁ ଉଦ୍ୟତ ହେଲା । ରାଜା ପ୍ରାଣଭୟରେ ଚିତ୍କାର କରିଉଠିଲେ । କିନ୍ତୁ କ୍ଷଣକ ମଧ୍ୟରେ ପରନ୍ତପର ଆଘାତରେ ରାଜାଙ୍କର ମୁଣ୍ଡଟି ଦେହରୁ ଅଲଗା ହୋଇଗଲା ।

ପୁରୋହିତ ନିକଟରେ ଗୋଟିଏ ବୃକ୍ଷରେ ଚଢ଼ି ଫଳ ତୋଳୁଥିଲେ । ସେ ରାଜାଙ୍କର ଚିତ୍କାର ଶୁଣି ନଦୀ ଆଡ଼କୁ ଚାହିଁ ଦେଖିଲେ ଯେ ପରନ୍ତପ ତାଙ୍କୁ ହତ୍ୟା କରୁଅଛି । ଏହି ଅଦ୍ଭୁତ ଓ ଭୀଷଣ ବ୍ୟାପାର ଦେଖି ସେ ମଧ୍ୟ ଚିତ୍କାର କରି ବୃକ୍ଷଡାଳରୁ ତଳକୁ ଖସି ପଡ଼ିଲେ । ପରନ୍ତପ ଏହି ଚିତ୍କାର ଶୁଣି ପାରିଲା; କିନ୍ତୁ କାହାରିକୁ ଦେଖିପାରିଲା ନାହିଁ; କାରଣ ସେତେବେଳକୁ ପୁରୋହିତେ ଭୟରେ ଗୋଟିଏ ବୁଦା ଭିତରେ ଲୁଚି ଯାଇଥିଲେ ।

ରାଜାଙ୍କ ଶବକୁ ନେଇ ପରନ୍ତପ ଗୋଟିଏ ନିଭୃତ ସ୍ଥାନରେ ପୋତିଦେଲା । ସେ ଚିନ୍ତା କରିବାକୁ ଲାଗିଲା, 'ମୁଁ ରାଜାଙ୍କୁ ତରବାରିରେ ହତ୍ୟା କଲାବେଳେ ବନ ମଧ୍ୟରେ ଗୋଟାଏ ଗଛରୁ କେହି ଖସି ପଡ଼ିବାର ଶବ୍ଦ ସଙ୍ଗେ ଚିତ୍କାର ମଧ୍ୟ ଶୁଣାଯାଇଥିଲା । କିଏ ଏହି ଚିତ୍କାର କରୁଥିଲା ?' ସେ ଏହି ପ୍ରଶ୍ନର କୌଣସି ସମାଧାନ କରିପାରିଲା ନାହିଁ । କୁଟୀରକୁ ଆସି ସେ ରାଜାଙ୍କୁ ହତ୍ୟା କରିଥିବା ସମ୍ବାଦ ରାଣୀଙ୍କୁ ଦେଲା । ରାଣୀ ଏଥିରେ ଆନନ୍ଦିତା ହେଲେ ।

ରାଜପୁରୋହିତ କୁଟୀରକୁ ଆସି ଅନ୍ଧ ହୋଇଯାଇଥିବାର ଛଳନା କଲେ । ପରନ୍ତପ ପଚାରିଲା, "ତୁମର ଏପରି ହଠାତ୍ ଅନ୍ଧ ହୋଇଯିବାର କାରଣ କଅଣ ?"

ପୁରୋହିତ ପରନ୍ତପକୁ ଚିହ୍ନି ପାରିଲେ ହେଁ ଛଳନା କରି କହିଲେ, 'ମହାରାଜ, ମୁଁ ଆଜି ବଡ଼ ବିପଦରେ ପଡ଼ିଲି । ଜୀବନ ନ ଯାଇ ଯେ କେବଳ ଆଖିଦୁଇଟି ଯାଇଛି ତାହାହିଁ ମୋର ସୌଭାଗ୍ୟ । ମୁଁ ବନ ମଧ୍ୟରେ ଗୋଟିଏ ହୁଙ୍କା ପାଖରେ ଛିଡ଼ା

ହୋଇଥିଲା । ସେଥିରେ ଯେ ଏତେ ଭୀଷଣ ସର୍ପ ଅଛନ୍ତି ମୋତେ ଜଣା ନ ଥିଲା । ମୋର ପାଦ ଶବ୍ଦ ଶୁଣି ଗୋଟାଏ ସାପ ସୁ ସୁ ଶବ୍ଦ କରି ମୋତେ ଦଂଶିବାକୁ ଆସିଲା । ତାର ନିଶ୍ୱାସବାୟୁ ମୋ ଆଖିରେ ବାଜିବାମାତ୍ରେ ମୁଁ ଅନ୍ଧ ହୋଇଗଲି । ଭାଗ୍ୟର କଥା, ସେ ମୋତେ ଦଂଶି ନାହିଁ । ନୋହିଲେ ମୁଁ ପ୍ରାଣ ଘେନି ଫେରି ନଥାନ୍ତି ।”

ପରନ୍ତପ ବୁଝିପାରିଲା ବ୍ରାହ୍ମଣ ତାକୁ ରାଜା ବୋଲି ମନେ କରିଛନ୍ତି । ସେ କହିଲା, “ପୁରୋହିତେ ! ଆଖିକୁ ଦେଖାଯାଉନାହିଁ ବୋଲି ଚିନ୍ତା କରନାହିଁ । ତୁମେ ଆମର କୁଳ ପୁରୋହିତ । ମୋର ଜୀବନ ଥିବାଯାକେ ମୁଁ ତୁମର ଯତ୍ନ ନେଉଥିବି । ଭାଗ୍ୟରେ ଥିଲେ ମୁଁ ଯେବେ ପୁଣି ରାଜା ହୋଇ ରାଜ୍ୟକୁ ଫେରିଯାଏଁ, ତେବେ ତୁମକୁ ପ୍ରଚୁର ଅର୍ଥ ଦେବି; ତୁମେ ସୁଖରେ ଦିନ କଟାଇ ପାରିବ ।”

ସେହିଦିନଠାରୁ ପରନ୍ତପ ବନକୁ ଯାଇ ଫଳମୂଳ ସଂଗ୍ରହ କରିବାକୁ ଲାଗିଲା । ରାଣୀ ଓ ପୁରୋହିତ କୁଟୀରରେ ରହି ସେହି ଫଳ ଖାଉଥିଲେ ।

ଯଥାସମୟରେ ରାଣୀଙ୍କ ଗର୍ଭରୁ ଏକ ପୁତ୍ର ଜାତ ହେଲା । ପିଲାଟି ଦିନକୁ ଦିନ ବଢ଼ି ଯୌବନରେ ପଦାର୍ପଣ କଲା ।

ଦିନେ ରାଣୀ ପରନ୍ତପକୁ ଗୋପନରେ ପଚାରିଲେ, “ତୁମେ କହୁଥିଲ, ରାଜାଙ୍କୁ ହତ୍ୟା କଲାବେଳେ କେହି ଜଣେ ତୁମକୁ ଦେଖି-ଥିଲା । ସେ ଲୋକଟି କିଏ ବୁଝିଛ ?”

ପରନ୍ତପ ଉତ୍ତର କଲା, “ମୋତେ କେହି ଦେଖି ନାହାନ୍ତି । ଜଣେ କିଏ ଗଛରୁ ଖସିପଡ଼ି ଚିତ୍କାର କରିବାର ମୋତେ ଶୁଣାଗଲା । ସେ ମନୁଷ୍ୟ କି କୌଣସି ବନ୍ୟଜନ୍ତୁ, ତାହା ମୋତେ ଜଣାନାହିଁ । ଗଛର ଡାଳଟା ହଲିଗଲା, ଗୋଟାଏ ଶବ୍ଦହେଲା । ସେ କଥା ମନେ ପଡ଼ିଲେ ଏବେ ମଧ୍ୟ ଭୟରେ ମୋର ଦେହ ଥରଉଠେ ।”

ରାଣୀ ଓ ପରନ୍ତପ ଏହିପରି କଥାବାର୍ତ୍ତା ହେଉଥିଲାବେଳେ ପୁରୋହିତ ଶୋଇ ରହି ତାହା ଶୁଣୁଥିଲେ । ମାତ୍ର ସେ ଏ ଦୁହିଁଙ୍କର କଥାବାର୍ତ୍ତା ଶୁଣିଛନ୍ତି ବୋଲି କାହାକୁ ଜାଣିବାକୁ ଦେଲେ ନାହିଁ ।

ପୁରୋହିତ ଦେଖିଲେ ଯେ ରାଣୀଙ୍କର ପୁତ୍ରଟି ଜଣେ ବଳିଷ୍ଠ ଯୁବକ ହୋଇଗଲାଣି । ଏପର୍ଯ୍ୟନ୍ତ ସେ ପରନ୍ତପକୁ ତାର ପିତା ବୋଲି ମନେକରି ଆସିଅଛି । ଏବେ ତାକୁ ପ୍ରକୃତ ଘଟଣା ଜଣାଇ ଦେବା ଉଚିତ ।

ଦିନେ ପୁରୋହିତ ସେ ଯୁବକଙ୍କ ହାତ ଧରି ନଦୀ ପର୍ଯ୍ୟନ୍ତ ଗଲେ । ସେଠାରେ ସେ ଚକ୍ଷୁ ଖୋଲିଲେ । ଏହା ଦେଖି ଯୁବକ ଅତ୍ୟନ୍ତ ବିସ୍ମିତ ହୋଇ କହିଲେ, "ତୁମକୁ ମୁଁ ଏତେ ବର୍ଷ ହେଲା ଅନ୍ଧ ବୋଲି ଜାଣିଥିଲି । ଏବେ ଦେଖୁଛି, ତୁମେ ପ୍ରକୃତରେ ଅନ୍ଧ ନୁହଁ । ଏପରି ଅନ୍ଧଭାବରେ ରହିଥିବାର କାରଣ କଅଣ ?"

ପୁରୋହିତ କହିଲେ, "ମୁଁ ପ୍ରକୃତରେ ଅନ୍ଧ ନୁହେଁ । କିନ୍ତୁ ଷୋଳବର୍ଷ ହେଲା ମୁଁ ଅନ୍ଧ ବୋଲି ଛଳନା କରି ମୋର ଜୀବନ ରକ୍ଷା କରିପାରିଛି । ତୁମର ପିତା କିଏ ଜାଣ ?"

ଯୁବକ ଉତ୍ତର କଲେ, "ନିଶ୍ଚୟ, ଯିଏ କୁଟୀରରେ ମୋର ମାଆଙ୍କ ସଙ୍ଗେ ରହି ଆମ ସମସ୍ତଙ୍କୁ ଆହାର ଯୋଗାଉଅଛନ୍ତି, ସେ ହେଉଛନ୍ତି ମୋର ପିତା ।"

ବ୍ରାହ୍ମଣ କହିଲେ, "ସେ ଲୋକଟା ତୁମର ପିତା ନୁହେଁ; ତୁମ ପିତାଙ୍କର ଭୃତ୍ୟ ପରନ୍ତପ । ତୁମର ପିତା ହେଉଛନ୍ତି ବାରାଣସୀର ରାଜା । ତାଙ୍କୁ ଏହି ଦୁରାତ୍ମା ହତ୍ୟା କରିଅଛି ।" କପଟୀ ପରନ୍ତପ ରାଣୀଙ୍କ ସହିତ ପାପସମ୍ପର୍କ ରଖିଥିଲା ଓ ତାଙ୍କ ପରାମର୍ଶରେ କପଟ

ରାଜାଙ୍କୁ ହତ୍ୟା କରିଥିଲା ତାହା ପୁରୋହିତ ବର୍ଣ୍ଣନା କରିଗଲେ ଓ ପରନ୍ତପକୁ ହତ୍ୟାକରି ପିତୃବଧର ପ୍ରତିଶୋଧ ନେବାକୁ କହିଲେ । ଯୁବକଙ୍କର ପୂର୍ଣ୍ଣ ବିଶ୍ୱାସ ଜନ୍ମାଇବା ନିମନ୍ତେ ବ୍ରାହ୍ମଣ ମାଟି ଖୋଳି ତାଙ୍କ ପିତାଙ୍କର ଅସ୍ଥିଗୁଡ଼ିକ ଦେଖାଇଦେଲେ ।

ଯୁବକ ଏବେ ନିଃସନ୍ଦେହ ହେଲେ ଯେ ଏହି ପରନ୍ତପ ତାଙ୍କ ପିତାଙ୍କର ହତ୍ୟାକାରୀ ଓ ତାକୁ ବଧ କରିବା ପାଇଁ ସେ ଦୃଢ଼ପ୍ରତିଜ୍ଞ ହେଲେ ।

ଦିନେ ଯୁବକ ପରନ୍ତପକୁ କହିଲେ, "ପିତଃ, ତୁମେ ସ୍ନାନ କରିବାକୁ ଗଲାବେଳେ ମୁଁ ତୁମର ପୋଷାକ ଓ ତରବାରୀ ଧରି ନଦୀତଟକୁ ଯିବି । ପୁତ୍ର ହିସାବରେ ଏହା ମୋର କର୍ତ୍ତବ୍ୟ ।"

ପରନ୍ତପ କୌଣସି ସନ୍ଦେହ ନକରି ଏଥିରେ ସ୍ୱୀକୃତ ହେଲା । ସେ ନଦୀରେ ସ୍ନାନ କରୁଥିବା ସମୟରେ ଯୁବକ ହଠାତ୍ ତାର ଚୁଟି ଧରି ତରବାରୀ ଉଠାଇ କହିଲେ, "ରେ ଅଧମ ପାପିଷ୍ଠ, ତୁ ଏହି ନଦୀକୂଳରେ ଏହି ତରବାରୀରେ ମୋର ପିତାଙ୍କୁ ହତ୍ୟା କରିଥିଲୁ । ଏବେ ମୁଁ ତୋତେ ହତ୍ୟାକରି ପିତୃଋଣ ପରିଶୋଧ କରିବି ।"

ପରନ୍ତପ ମୃତ୍ୟୁ ଭୟରେ ବିକଳ ହୋଇ କହିଲା, "ମୁଁ ରାଜାଙ୍କୁ ହତ୍ୟା କଲାବେଳେ କେହି ଦେଖି ନ ଥିଲେ । କେବଳ କିଏ ଜଣେ ଗଛରୁ ଖସି ପଡ଼ି ଚିତ୍କାର କରିଥିଲା । ସେ ମନୁଷ୍ୟ କି କୌଣସି ବନ୍ୟପଶୁ ତାହା ମୋତେ ଜଣା ନାହିଁ । ସେ ଯେ ହେଉନା କାହିଁକି, ତାହାଠାରୁ ତୁମେ ଏ ସମ୍ବାଦ ପାଇଛ । ମୋତେ କ୍ଷମା କର ।"

ଯୁବକ କହିଲେ, "ନା, ତୋ ପାପର କ୍ଷମା ନାହିଁ ।" ଏହା କହି ସେ ତରବାରୀଦ୍ୱାରା ପରନ୍ତପର ମୁଣ୍ଡକୁ କାଟିଦେଲେ ।

ଏହାପରେ ସେ କୁଟୀରକୁ ଯାଇ ମାତାଙ୍କୁ ନାନା ପ୍ରକାରେ ଭର୍ତ୍ସନା କଲେ ଓ ଭବିଷ୍ୟତରେ ପବିତ୍ର ଜୀବନ ଯାପନ କରିବାକୁ ପ୍ରତିଜ୍ଞା କରାଇଲେ । ପୂର୍ବୋକ୍ତ ପରାମର୍ଶରେ ରାଣୀ ଓ ପୁତ୍ର ବାରାଣସୀକୁ ଯାଇ ସେଠାର ରାଜା ବୋଧିସତ୍ତ୍ୱଙ୍କୁ ନିଜର ପରିଚୟ ଦେଲେ । ବୋଧିସତ୍ତ୍ୱ ଯୁବକଙ୍କୁ ନିଜର ଭାଇ ବୋଲି ଜାଣିପାରି ତାଙ୍କୁ ନିଜର ପ୍ରତିନିଧିରୂପେ ନିଯୁକ୍ତ କଲେ । ରାଣୀ ମଧ୍ୟ ରାଜମାତାର ସମ୍ମାନରେ ପ୍ରତିଷ୍ଠିତ ହେଲେ । ପୂର୍ବୋକ୍ତ ସ୍ୱଗୃହକୁ ଯାଇ ପତ୍ନୀଙ୍କ ସହିତ ସୁଖରେ ବାସ କଲେ । ✻✻✻